# ଗୀତାୟନ

ପ୍ରଣେତା

ପଣ୍ଡିତ ଗୋଦାବରୀଶ ମିଶ୍ର

ପ୍ରଥମ ସଂସ୍କରଣ

ପ୍ରକାଶକ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲି:

ବ୍ରହ୍ମପୁର : କଟକ : ସମ୍ବଲପୁର

ମୂଲ୍ୟ ପାଞ୍ଚ ଟଙ୍କା

# କବି-ପରିଚୟ

ଗୀତାୟନ ପ୍ରଣେତା ପଣ୍ଡିତ ଗୋଦାବରୀଶ ମିଶ୍ର ୧୮୮୬ ମସିହାରେ ବାଣପୁରରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତା ନୀଳାଦ୍ରି ମିଶ୍ର ସେ ଅଞ୍ଚଳର ଜଣେ ସମ୍ମାନିତ ବ୍ୟକ୍ତି ଥିଲେ । ୧୮ ବର୍ଷ ବୟସରେ ପିତାଙ୍କର ମୃତ୍ୟୁ ହୁଅନ୍ତେ ଯୁବକ ଗୋଦାବରୀଶ ଭୀଷଣ ଦାରିଦ୍ର୍ୟର ସମ୍ମୁଖୀନ ହେଲେ । ତଥାପି ଉଚ୍ଚ ଶିକ୍ଷାଲାଭରୁ ସେ ନିଜକୁ ବଞ୍ଚିତ ନ କରି ଧୈର୍ଯ୍ୟ ଓ ସାଧନା ବଳରେ ପ୍ରଥମେ କଟକ ରେଭେନ୍‌ସା



କଲେଜରେ ଅଧ୍ୟୟନ କରି ପରେ କଲିକତା ବିଶ୍ୱବିଦ୍ୟାଳୟରୁ କୃତିତ୍ୱ ସହକାରେ ଏମ୍. ଏ. ପାସ କଲେ ।

ଏହିକାଳବେଳେ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ସେ ସରକାରୀ ଚାକିରୀ ମୋହ ଏଡ଼ି ଦେଶସେବାରେ ନିଜକୁ ନିୟୋଜିତ କରିବାକୁ ସଂକଳ୍ପ କଲେ । ସେ ପ୍ରଥମେ ସତ୍ୟବାଦୀ ବିଦ୍ୟାଳୟରେ ନିଜ ବ୍ୟୟ ପାଇଁ ସାମାନ୍ୟମାତ୍ରିକ-ବେତନ ଗ୍ରହଣ କରି ଶିକ୍ଷକତା କଲେ । ୧୯୧୩ ମେ ମାସରୁ ୧୯୧୯ ଫେବ୍ରୁୟାରୀ ପର୍ଯ୍ୟନ୍ତ ସେ ଏହି ସୁଯୋଗ ଲାଭ କରି ଦେଶରେ ଉପଯୁକ୍ତ ନାଟକ ଦଳ ଗଠନ କରିବାରେ ଲାଗିଥିଲେ । ଏ ମଧ୍ୟରେ ସେ କିଛି କାଳ ପାଇଁ ସ୍କୁଲର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରିଥିଲେ ।

୧୯୨୯ ରେ ବିହାରର ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳରେ ଓଡ଼ିଆ ଭାଷାର ପ୍ରଚାର ପାଇଁ ପଣ୍ଡିତ ଗୋପବନ୍ଧୁ ଚେଷ୍ଟାକଲେ ଏବଂ ଏ କାର୍ଯ୍ୟର ଭାର ନେବା ପାଇଁ ସେ ପଣ୍ଡିତ ଗୋଦାବରୀଶଙ୍କୁ ମନୋନୟନ କଲେ । ତେଣୁ ସେ ଚକ୍ରଧରପୁର ଯାଇ ନାନା ପ୍ରତିବନ୍ଧକ, ଅଭାବ ଓ ଅସୁବିଧା ମଧ୍ୟରେ ସେଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠାକରି ନିଜେ ତାହାର ପ୍ରଧାନ ଶିକ୍ଷକ ହେଲେ । ଫଳରେ ତନ୍ଦ୍ରୀ ମାତୃଭାଷା-ବିସ୍ମୃତ ଓଡ଼ିଆମାନଙ୍କ ପ୍ରାଣରେ ପୂର୍ଣ୍ଣ ଜାଗରଣ ଆସିଥିଲା । ତାଙ୍କର ଏ କାର୍ଯ୍ୟରେ ପ୍ରଧାନ ସହାୟକ ଥିଲେ ସ୍ୱର୍ଗତ ପ୍ରଫେସର ଅନନ୍ତ ମିଶ୍ର ।

ଏହା ପରେ କଂଗ୍ରେସ ଆନ୍ଦୋଳନର ଆରମ୍ଭ । ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ସେ କଂଗ୍ରେସ ଆନ୍ଦୋଳନରେ ଯୋଗଦାନ କରି ସିଂହଭୂମିଜିଲ୍ଲାରେ କଂଗ୍ରେସ ପ୍ରଚାର କାର୍ଯ୍ୟ କରିଥିଲେ । ଚକ୍ରଧରପୁର ଅବସ୍ଥାନ କାଳରେ ସେ ନିଜର ସରଳ ଉଦାର ଗୁଣରେ ଜାତିନିର୍ବିଶେଷରେ ଓଡ଼ିଆ, ବଙ୍ଗାଳୀ ଓ ବିହାରୀମାନଙ୍କର ସମାଦର ଲାଭ କରିଥିଲେ ।

ଓଡ଼ିଶାର ରାଜନୀତି କ୍ଷେତ୍ରରେ ନାନା ଭାବରେ ସର୍ବଦା ସଂଶ୍ଳିଷ୍ଟ ରହି ମଧ୍ୟ ପଣ୍ଡିତ ଗୋଦାବରୀଶ ପ୍ରଧାନ ଶିକ୍ଷାବିତ୍ ଓ ସାହିତ୍ୟିକ ଭାବେ ପରିଚିତ । ବାଣପୁରରେ ପ୍ରତିଷ୍ଠିତ ହାଇସ୍କୁଲ ତାଙ୍କର ସାଧନାର ଫଳ ।

କଲେଜ ଜୀବନରୁ ସେ କବିତା ଲେଖା ଆରମ୍ଭ କରିଥିଲେ । ତାଙ୍କର ଲିଖନଶୈଳୀ ପୂର୍ବବର୍ତ୍ତୀ ଓ ସମସାମୟିକ ଲେଖକମାନଙ୍କଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସରଳ ସୁବୋଧ ଗାଉଁଲି ଭାଷାରେ ଗଳ୍ପ ଓ କିମ୍ବଦନ୍ତୀ-ମୂଳକ ଖଣ୍ଡକବିତା ରଚନା ଓଡ଼ିଆ ସାହିତ୍ୟରେ ତାଙ୍କଠାରୁ ଆରମ୍ଭ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସେହି କାରଣରୁ 'କଳିକା', 'କବିଳୟ' ଓ 'ଆଲେଖିକା'ର କବିତାଗୁଡ଼ିକ ଏ ଦେଶର ପାଠକମାନଙ୍କ ନିକଟରେ ଅତିପ୍ରିୟ ଓ ପରିଚିତ । ସେ ପ୍ରାୟ ୩୫୦ଟି ଖଣ୍ଡକବିତା ରଚନା କରିଅଛନ୍ତି ।

ନାଟ୍ୟକାର ଭାବରେ ମଧ୍ୟ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଖ୍ୟାତି ସୁପ୍ରତିଷ୍ଠ । ତାଙ୍କ ରଚିତ 'ପୁରୁଷୋତ୍ତମଦେବ' ଏବଂ 'ମୁକୁନ୍ଦଦେବ' ଏହାର ଉତ୍କୃଷ୍ଟ ନିଦର୍ଶନ ।

ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଶିଶୁସାହିତ୍ୟ ତଥା ରାଜନୈତିକ ସାହିତ୍ୟ ଲେଖାରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସିଦ୍ଧହସ୍ତତା ଅତୁଳନୀୟ । ପଦ୍ୟ ଭଳି ତାଙ୍କର ଗଦ୍ୟ ଲେଖାର ଭଙ୍ଗୀ ମଧ୍ୟ ସାହିତ୍ୟକ୍ଷେତ୍ରରେ ଉତ୍କୃଷ୍ଟ ।

ପଣ୍ଡିତ ଗୋଦାବରୀଶ ଇଂରେଜୀ ଭାଷାରେ ମଧ୍ୟ ଅନେକ ଗୁଡ଼ିଏ ଗ୍ରନ୍ଥ ରଚନା କରି ଅଛନ୍ତି । Folk Tales of India ଏବଂ A Book of Selected Essays ତନ୍ମଧ୍ୟରେ ପ୍ରଧାନ । ସେ ଖଣ୍ଡିଏ ଇଂରାଜୀ କବିତା ପୁସ୍ତକ ମଧ୍ୟ ସଙ୍କଳନ କରିଥିଲେ ।

କବିଙ୍କର କେତେକ ଆଧୁନିକ କବିତା ସହିତ 'କଳିକା' ଓ 'କିଶଳୟ'ର ଅଧିକାଂଶ କବିତା 'ଗୀତାୟନ'ରେ ସ୍ଥାନ ପାଇଅଛି ।

କେତେକ କବିତାରେ ପ୍ରଦତ୍ତ ଟିପ୍ପଣୀ ପ୍ରକାଶକଙ୍କ ଦ୍ୱାରା ସଂଯୋଜିତ ହୋଇଅଛି ।

**ପ୍ରକାଶକ**

# ସୂଚୀ

# ସେବିକା

ଶମନ ଦେବତା ବସି ଭବପୁର ଦ୍ୱାରେ
ଶତ ଶତ ନାରୀ ଗୁଣ ଦୁର୍ଗୁଣ ବିଚାରେ ।
ପଢ଼ି ପାଞ୍ଜି ଚିତ୍ରଗୁପ୍ତ କହେ ବିବରଣ,
ଶୁଣୁଁ ଜଣେ ଭୁଲାଦାସ୍ତ୍ରୀ ଭୁଲନ୍ତି ଶମନ ।
ଏକ ଥିଲା ନୃପତି-ଦର୍ପିତ ସମ୍ରାଟପ୍ରେୟସୀ;
ସାମ୍ରାଜ୍ୟ ଶାସନେ ଭାଗ ନେଇଅଛି ବସି ।
କେତେ ପ୍ରବଞ୍ଚନା, ଗର୍ବେ ହୋଇ ଆଗୁସାର,
ସ୍ୱଶାନ୍ତି ଲାଗି ଶତ୍ରୁ କରିଛି ସଂହାର ।
ଆଉ ଏକ ବାଗ୍‌ଦେବୀ ମର୍ତ୍ତ୍ୟ ବିଦୁଷୀ ପ୍ରବରା
ଲେଖନୀ ଚାଳନେ ଧନ୍ୟ କରିଅଛି ଧରା ।
ଏକ କରିଛି ନବଧର୍ମ ପ୍ରଚାର ଜଗତେ,
ନେଉଛି ଆପଣ ପଛୁଁ ପାତକୀ ସଙ୍ଗତେ ।

ବାଗ୍ମିବର ନାସ୍ତିକନ୍ଦ କେ ସିଂହ ନିର୍ଘୋଷେ
କମ୍ପାଇଛନ୍ତି ସୃଷ୍ଟି, ତହୁଁ ଅଗ୍ରସର ତୋଷେ ।
ବିଜ୍ଞାନ ଜଗତେ କାର ପ୍ରତିଷ୍ଠା ପ୍ରଥମ,
ବିଶ୍ୱଜ୍ଞାନ ପରିସର ବୃଦ୍ଧିର କାରଣ ।
କହୁଁ ଜଣେ ଦାନବଳେ ଉଚ୍ଚ ସର୍ବେ ଆସି,
ସ୍ୱର୍ଗପଥ ଯାହା ଲାଗି ଅତ୍ୟର୍ଥ ପ୍ରୟାସୀ ।
ତୁଳାପନ୍ତେ ଧର୍ମରାଜ କହୁଁ ଜଣେ ଭୁଲି,
କହନ୍ତି, "ସାଧନା ମିଛ ନୋହିଛି ଆତୁର ।"
କହୁଁ ଜଣେ ବାହୁଡ଼ନ୍ତି ନବ ତପ ଲାଗି,
ସେ ଯା କର୍ମ ଅନୁରୂପ ଫଳାଫଳେ ଭାଗୀ ।

ଶେଷେ ଉପଗତା ନାରୀ ଅବନତ ମୁଖେ,
ବହି ସତେ ସାର ସୃଷ୍ଟି ବ୍ୟଥାଭାର ବୁକେ ।
ଜୀର୍ଣ୍ଣବସ୍ତ୍ର ପରିହିତା, ଅତି ଶୀର୍ଣ୍ଣକାୟା,
ନୁହଇ ସତେ ବା ନାରୀ, ମାତ୍ର ନାରୀଚ୍ଛାୟା ।
ତା ପଞ୍ଜିକା ଫେଇ ପଢ଼େ ଚିତ୍ରଗୁପ୍ତ ସ୍ୱରେ—
"ଏ ଜଣେ ସେବିକା ମାତ୍ର ଥିଲା ମର୍ତ୍ତ୍ୟତଳେ ।
ରୋଗଶଯ୍ୟା ପାଶେ ଯାର ଯାଇଛି ଜୀବନ,
ଦୁଃଖିଦୁଃଖ-ବିନୋଦନେ ସରିଅଛି ଧନ ।
ପର କ୍ଳେଶେ ବୁକୁ ଯାର ଭିଜୁଛି ଲୋତକେ,
ରମଣୀସୁଲଭ ଜ୍ୟୋତି ମରିଛି ପଲକେ ।
ଦେଖି ତା ମଦନ ନେଲା ହରି ଉପହାର,
ନର ତହୁଁ ନ ଲୋଡ଼ିଲା କରସ୍ପର୍ଶ ଯାର ।

ଶକ୍ତାନାଶ ତୀକ୍ଷ୍ଣଶୀଖ ଅଙ୍ଗବ ଜଗତେ,
ଶକ୍ତ ମଧ୍ୟ କରିବାକୁ ଲଗିଥିଲ ବ୍ରତେ ।
ଅଧର୍ମ ଅନୀତି ସଙ୍ଗେ ନିତି ଅଛୁ ଲଢ଼ି,
ତଥାପି ପ୍ରପଞ୍ଚେ ସ୍ୱର୍ଗ ପାର ନାହିଁ ଗଢ଼ି ।
ସ୍ୱର୍ଗ ଲଭେ ଜନେ ମନେ ପୋଷି ନାହିଁ ଆଶା,
ଜନେ ଘୋଷି ନାହିଁ ମୁଖେ ଜପ ତପ ଭାଷା ।"

ଗୁଡ଼ ଭକ୍ତ ଧର୍ମରାଜ ଗୃହୀଙ୍କ ଚରଣେ,
ଯୋଡ଼ କର ନମସ୍କାର କଲେ ଭକ୍ତି ଭରେ ।
ନ ଆସଇ ସ୍ତୁତିବାଣୀ ମୁଖେ ଭାଷା ଲବେ,
ପୂଜ୍ୟପୂଜା ସଂପାଦିଲେ ଶଙ୍କିତ ନୀରବେ ।
ଫିଟାଇ ସ୍ୱହସ୍ତେ ଦେଲେ ସ୍ୱର୍ଗପଥ ଦ୍ୱାର,
ଉଦାର ସେବକ ଧୀର ପଦେ ହେଲେ ପାର ।
ହର୍ଷ ବା ବିଷାଦ ରେଖା ନ ଦିଶେ ବଦନେ,
ଚାଲିଗଲେ; ରୁଦ୍ଧ ଦ୍ୱାର ହୋଇଲା ତକ୍ଷଣେ ।

## ଜୀବେ ଦୟା

ରାଜହର୍ମ୍ୟ ଉପବନେ ବସି ସିଦ୍ଧାର୍ଥ ବିଜନେ,
କେ ଜାଣିବ, କି ଭାବନା କରନ୍ତି ଚିତ୍ତେ ?
ଲୁଚି ଡାଳେ ପରଭୃତ ଢାଳଇ ଦିବ୍ୟ ଅମୃତ,
ଉପବନ ସାରା ପ୍ରତିଧ୍ୱନିତ ଗୀତେ ।

ଆହା କେଡେ ରୁଚିର ଛବି !
ପାଷାଣ ହେଲେ ତ ଦେଖି ଯାଆନ୍ତା ଦ୍ରବି ।

ହଂସପନ୍ତି କଳରବେ ଉଡ଼ନ୍ତି ଉପରେ ନନ୍ଦେ,
ପ୍ରତେ ହୁଏ ସତେ ଏକ ଶୁକ୍ଳ ବଳଦ;
ପଡ଼ନ୍ତେ ପଲକେ ଶୁଭ, ଦେଖନ୍ତି ସିଦ୍ଧାର୍ଥ କୃତି,
ବରଜ ଭବନା ମନୁଁ, ଲଭନ୍ତି ମୁଦ;
ସହସା କ ଶୁଭିଲା ରଡ଼,
ଆକାଶୁଁ ମରାଳ ଗୋଟି ପଡ଼ିଲା ଝଡ଼ ।

ଶରବିଦ୍ଧ ହଂସଦେହୁଁ ଶର ଉପୁଡ଼ିଲେ ସେହୁ,
ସରୋବରୁ ଆଣି ଜଳ ସିଞ୍ଚିଲେ ମୁଖେ;
ମରୁ ମରୁ ଗଲା ଜୀଇ ହଂସ, କ ନ କଲା ବିହି !
ଆନନ୍ଦେ ସିଦ୍ଧାର୍ଥ ତାଙ୍କୁ ଧଇଲେ ବୁକେ;
ପକ୍ଷୀ ଜନ୍ମ ଲଭିଛୁ ସିନା,
ଜୀବପ୍ରତି ଜୀବଦୟା ନାହିଁ କ ଜାଣ ?

ହୃଷ୍ଟ ସିଦ୍ଧାର୍ଥ ବଦନ କରେ ହଂସ ନିରୀକ୍ଷଣ,
କୃତଜ୍ଞ ଚାହାଣୀ ତୋର ଦଶଇ ତାର;
ଦେଖି ରାଜପୁତ୍ର ସୁଖେ ତା ଗାତ୍ର ଚୁମ୍ବନ୍ତି ମୁଖେ,
ଦୁହେଁ ଦୁହଙ୍କର ଅବା ସୁହୃଦ ସାର;
ଯିବ ଘରେ ସେ ତୋର ତୁଣ୍ଡ !
ଆସି ଦେବଦତ୍ତ ହଂସେ ଧରନ୍ତି ଭଣ୍ଡ ।

ବଖାଣନ୍ତ ଦେବଦତ୍ତ, "ଭାଇ, କହୁଛି ମୁଁ ସତ,
ଏ ହଂସ ପଡ଼ିଛି ଭୂମେ ମୋହର ଶରେ;
ନ୍ୟାୟେ ଏହା ମୋ ସଂପତ୍ତି, ଦିଅ ହେ ମୋତେ ତୁରିତ,
କେବଳ, ଆନ ହଂସ ପଛେ ଧାଇଁବି ଶରେ;
ମୃଗୟା ମୋ ଅଟଇ କାର,
ରାଜପୁତ୍ରେ ମିଳେ ଆଉ କି ସୁଖ ଚାର ?"

ସିଦ୍ଧାର୍ଥ ଭାଇଙ୍କ ଧୀରେ ବୁଝାଇ କହିଲେ ଗିରେ,
"ଭାଇ ଭାଗ ଆସ ଦୁହେଁ ବାଣ୍ଟିବା ଆଜ;
ତୁ ନେ ପିତୃରାଜ୍ୟ, ମୋତେ ଦିଅ ହଂସ ହୃଷ୍ଟ ଚିତ୍ତେ
ପିତା ତ ଯେବେବେ ଆମେ ହୋଇଲେ ରାଜ;
ମାରିଥିଲୁ ହଂସେ ତୁ ପ୍ରାଣେ,
ମୁଁ ଜୀବ ଦେଇଛି, କେହ୍ନେ ଅର୍ପିବି ଆନେ ?

ଏକ ଦଣ୍ଡେ ଶତ ଜୀବ ମାରିପାରେ, ଯେ ଇଚ୍ଛିବ;
ଶତ ବର୍ଷେ ଏକ କେହ୍ନୁ ପାରିବ ସୃଜି ?
ଜୀବେ ଦୟା ବଡ଼ କଥା, ମନେ ରଖିଥିବୁ ସଦା;
ରାଜା ହେବୁ, ଭାଇ, ପ୍ରଜା ଅନ୍ତର ବୁଝି;"
ଦେବଦତ୍ତ ଶୁଣିଲା କାନେ,
ରୁଷିଗଲା, ମରାଳଟି ବଞ୍ଚିଲା ପ୍ରାଣେ ।

## ଛିଡ଼ି ପଡ଼ିଥିବ ମଥା

ହର୍ମ୍ୟ ଚଉ ପାଖେ ରମ୍ୟ ଉପବନ
ଫୁଲ ଫଳେ ସୁଶୋଭିତ,
ଅନ୍ନପୁଷ୍ଟ ଶ୍ୱାନ ପ୍ରହରୀ ଜଗଇ
ମୁନିବ ସ୍ନେହେ ଗର୍ବିତ ।
ଦୀନ ପଥବାସୀ ଯେବେ ସେ ଦେଖନ୍ତେ
ତର୍ଜନେ କମ୍ପାଏ ଧରା;
ବଳା ହୋଇଥିଲେ, ଧାଇଁଆସି ଦାନ୍ତେ
ଚିରନ୍ତା ତା ଦେହ ପରା !
ଶଙ୍କିତ ପଡ଼ୋଶୀ, ନୟନ ଏଡ଼ି ତା,
ଚଳଇ ନିଜ ଭବନେ;
ସେ ନୁହେଁ ତସ୍କର, ନୁହଁଇ ଦୁରାତ୍ମା,
ହୀନ ମାତ୍ର ଅଟେ ଧନେ ।
ନାହିଁ କୁକୁରର ହେତୁ ଲବେ ତାକୁ
ହିଂସା କରିବାକୁ ହବେ;
ସେ ଶ୍ୱାନ ବାପୁଡ଼ା ଆହା କି ଭଇଲେ
ସନ୍ତୁଷ୍ଟ ସବୁ ନୀରବେ !

ମୁଦି ନେତ୍ର ଦିନେ ଧନୀ ହର୍ମ୍ୟବାସୀ
ଏ ମର୍ତ୍ତ୍ୟୁ ନେଲେ ମେଲଣି,
ପୁଅ ପତ୍ନୀ ପ୍ରିୟ ପରିଜନପୁଞ୍ଜେ
ଶୁଣାଇ ଅନ୍ତିମ ବାଣୀ ।

ନନ୍ଦନ ଶୂନ୍ୟ          ହୋଇଗଲା ହର୍ମ୍ୟପୁର,
ହୋଇଲା ଜୀର୍ଣ୍ଣ ଉଦ୍ୟାନ;
ରଙ୍ଗିର ଯେ ଗ୍ରାମ          ଶ୍ମଶାନେ କେବଳ
ରହିଛି ଏକାକୀ ଶ୍ୱାନ ।
ଦ୍ରୁହସ୍ତ କାମ ତା          ସହେବ ନାହିଁ କି
ମରଣ ଏମାରେ ସହେ ?
ଅନ୍ନ ବିନେ ସେ ତ          ହେଲାଣି କଙ୍କାଳ,
ଝଟେଳ ସ ଫୁଟି ନାହିଁ ବୃନ୍ତେ ।
କେଜାଣି କପଟ          ରଖିଛି ସେ ଜୀବ ?
ଜଗିଛି ଆଉ କି ନିଧି ?
ଅନ୍ୟର ମୁଷ୍ଟିନା          ଅନ୍ନ, ତା ପାଇଁ ତ
ଲୋକ ନ ଖଞ୍ଜିଛି ବିଧି ।

ତର୍ଜନ ଗର୍ଜନ          ନାହିଁ ଆଉ, ମାତ୍ର
ଜୀବନ ଅଛି ତା ବାକି;
ଘନ ପ୍ରତିବାସୀ          ଚଢ଼ିଲେ ନୟନେ,
ବୁଜି ସେ ଦିଅଇ ଆଖି ।
ସେ ଘନ ଜନର          କୁଟୀର ବାହାରେ
ଖୋଜେ ସେ ଉଚ୍ଛିଷ୍ଟ ଅନ୍ନ;
କେ କାଳେ ଦେଖିବ,          ସେଥିଲାଗି ଅବା
ହେଉଥାଏ ଛନଛନ ।
ଘନ ଜନ ବିନେ          ଦେଖନ୍ତେ ସେ ଦୃଶ୍ୟ
ଅନ୍ନ ଦେଇ ଯାଏ ପାଦେ;

ଅନାଇ କୁକୁର — ଚଳନ୍ତକ ସ୍ୱପ୍ନାବେ
ଚଳାଇଲା ଊର୍ଦ୍ଧ୍ୱ ଶ୍ୱାସେ ।
ମନେ ପାଉଥିବ — ଚଢ଼ ପୂର୍ବର ତା
ନିର୍ଜନ ଗର୍ଜନ କଥା;
ଶ୍ୱାନ ହେଉ ପଛେ, — ଲାଜେ ତା ମେଲଗି
ଟୁଣ୍ଡ ଉଡ଼ୁଥିବ ମଥା ।
ସମ୍ମାନଲବ୍‌ଧ ସେ — ଖାଦ୍ୟ ଗୁଡ଼ି, କ୍ଷୀ
ସେ ଦିନ କି ଥିବ ଖାଇ ?
ଘନ ପ୍ରାନ୍ତବାସୀ — ନେତ୍ରୁ ବହୁଥିଲା
ଲୋତକ ତା ରୂପ ନିହି ।

## ଆହା ମୋର ଗଣ୍ଠି ଧନ !

ପାଇଅଛୁ ତୃଳି ଟେକି ଏ ମର୍ତ୍ତ୍ୟ କାନ୍ଥିଆ,
ସ୍ୱର୍ଗେ ତ ନ ଥିବ ପାଇ ଦରିଦ୍ର ମୂଳିଆ ।
ମୁଣ୍ଡଖାଲ ଭୂଣ୍ଡେ ମାରି ଖଟେ ନିତି ସେହୁ,
ସେ ଲାଗି ଆତ୍ମା ତା ଥିଲା ନ ପଳାଇ ଦେହୁଁ ।
ରୋଗେ ପଡ଼ି ନ କାଢ଼ିଲା ଗୋଡ଼ କେତେ ଦିନ,
ପଥ୍ୟ ବିନା କାୟା ତାର କ୍ରମେ ହେଲା କ୍ଷୀଣ ।
ଯନ୍ତ୍ର ବାହାରିବ କେହ୍ନେ ତା ଭଡ଼ୋ ପିଲା;
ଭଲ ଘର ବୋହୂ ତରୁ, ହେଲେ ନିହିଁ ନ ଥିଲା ।
ଦୃଷ୍ଟିହେଉ, ଗରିବେ ନେପଣ୍ଣୁ ଧରିନ୍ତୁ ସନ୍ତାନ,
ତା ନିଜ ଘର ତ ତାକୁ ହେଉଅଛି ଶ୍ମାଣ !

ନଶା-ଗର୍ଭ ଜନ୍ମି ଶିଶୁ କାନ୍ଦେ କୁଆଁ କୁଆଁ;
କାଣିଆଁ ଶ୍ରବଣେ ଗୀତ ସୃଷ୍ଟି କରେ ନୂଆ ।
ହରଷେ ଖେଳନ୍ତି କ୍ଷଣେ ହସ ତା ଲପନେ,
ଶୋଇବାର ଆଗୁଁ ଯେହ୍ନ ଅନନ୍ତ ସ୍ୱପନେ ।
ମର୍ତ୍ତ୍ୟଲୀଳା ସରିଗଲା ସେ ମୁହୂର୍ତ୍ତେ ତାର
ନଶାମୁକ୍ତେ ପଡ଼ିଲ କ ବଧାତା ପ୍ରହାର !
ଅଜ୍ଞାନ ଶିଶୁରେ ରମ୍ଭି କହିଲ ସେ କାନ୍ଦି,
"ଭୁ, ଧନ, ରଖିଲୁ ମୋତେ ଏ ମରତେ ବାନ୍ଧି;
ନୋହିଲେ ମୁଁ ଆଣିଥାନ୍ତି ଚତା ପତସହ,
ନ ଧର ମୁହୂର୍ତ୍ତେ ଆଉ ଏ ଜୀବ ଦୁର୍ବହ ।"

ଲୁଚିଗଲା କାଣିଆର ସତ୍ତ୍ୱ ଚତାନଳେ,
ଅପତ୍ୟ ଲାଳନେ ନଶା ବ୍ୟସ୍ତ ମହୀତଳେ ।
ପରଦ୍ୱାରେ ଖଟି ଦନ ଅର୍ଜେ ଯା ଅଳପ,
ତହିଁ ତା ଆହାରେ ଭୋଜ୍ୟ, ବରତେ ତଳପ ।
ବଧି ଯେ ଖଞ୍ଜିଛି ମର୍ତ୍ତ୍ୟ ବବାହ-ସ୍ୱପନ,
ସନ୍ତାନ ତା ପୁଣ୍ୟଫଳ ଲଭଇ ଭୁବନ ।
ତା ଯୋଗେ ସମ୍ଭବେ ହବେ ଯୁଗ ପରମ୍ପରା,
ନ ପାରେ ପରଶି ବଶ୍ୱେଶ୍ୱର ମୃତ୍ୟୁ ଜରା ।
ଶିଶୁରୁ ମାନବ ଗଢ଼ି ପାଳେ ସ୍ନେହେ ପ୍ରାଣୀ,
ନ ବୁଝି ପାଳଇ ମୂର୍ଖ, ବୁଝୁଥିବେ ଜ୍ଞାନୀ ।

ଖଟି ଦନେ ଦନ ଯାଏ ପେଟରେ ନଶା ତରେ,
କୋଳରେ ଶିଶୁ ତା ଲୋକେ କାନ୍ଦୁଥିବ ଘରେ ।

ସେ ଚେଲି ତ ମୁଖେ ତାର ବସି ଦେବ ସ୍ତନ,
ଶୁଖିଲା ଅଧରେ ଥରେ ଚୁମ୍ବିବ ବଦନ ।
ବାଟେ ଯାଉଥିଲା ଗର୍ବେ କା ମୋଟର ଗାଡ଼ି,
ବେଗ କି କମେ ତା ? ଗଲା ନାଚି ଅଙ୍ଗେ ମାଡ଼ି ।
'ଆହା ମୋର ଟଣ୍ଡିଧନ !' କେଶେ ଏତ କଥା
କହନ୍ତି ସେ, ଘୋଟିଲେ ଶର ନୀରବତା ।
ଶବ ତା 'ଓହ୍ଲାଇନେଲେ ପୁର ମେହେନ୍ତରେ;
କେ ଜାଣେ, ଶିଶୁଟି କଣ କରିଥିବ ଘରେ !

## ମୁଣ୍ଡବଳି

ଭୋଇ ବଂଶ ନୃପେ ହରାଇ, ଫିରିଙ୍ଗି
କିଣିଲେ ଖୋରଧା ରାଜ୍ୟ;
ଗୋରା କର୍ମଚାରୀ ସ୍ଥାପି, ନବଭାବେ
ନିର୍ବାହିଲେ ରାଜକାର୍ଯ୍ୟ ।
କେ ଶିର ନୁଆଁଇ ମାନିଲା ଶାସନ,
କର ଗଣି ଦେଲା କେହୁ;
କେବଳ ପାଇକେ କହିଲେ, "ଲଢ଼ିବୁ
ମୁଣ୍ଡ ଗଲେଯାଏ ଦେହୁ ।"
ଖୋରଧା ବକସି ବୀର ଜଗବନ୍ଧୁ
ହାରି ଯାଇଛନ୍ତି ରଣେ;
ନିଃଶଙ୍କେ ଫିରିଙ୍ଗି ସୃଜ ଲୀଳାଭୂମି,
ରହନ୍ତି ଉଷତ ମନେ ।

ତଥାପି ତାପଙ୍କ ଗଣ୍ଡେ ନ ଚାରନ୍ତି
ସହଜେ ପକାଇ ପାଦ;
ତା ଦଳବେହେରା ପ୍ରଜାପୁଞ୍ଜ ବଳେ
ରଚନ୍ତି ଘୋର ପ୍ରମାଦ ।
ବାହୁ ଯୁଗ ଯେତେ ବଢ଼ୁ ତାଙ୍କର;
ତେତିକ ବଧୂ ହୃଦୟେ;
ନିଜ ମୁଣ୍ଡ ପଛେ ହରାଇବେ, ପ୍ରଜା
ତାଙ୍କୁ ନ ତେଜିବେ ଭୟେ ।

ଅସହ୍ୟ ମଣିଲେ ଫିରିଙ୍ଗି ଶାସକ;
କହିଲେ, "ଲାଗିଛି ନାହିଁ,
ତାପଙ୍କୁ ତାଙ୍କୁ ମୋ ଧରିବା ନିଶ୍ଚିତ";
ପେଷିଲେ ବିପୁଳ ଥାଟ ।
ଦୁଇ ଥାଟେ ଯୁଦ୍ଧ ଲାଗିଲା ବିଷମ,
ଜିତିଲେ କାର ନାହିଁ ହେଲା;
ବର୍ଷ ସାତ ଦିନେ ଘଟିଲା ସମର,
ହାରିଲେ ଦଳବେହେରା ।
ତାପଙ୍କୁ ନେଇଣି ମାରି ସେ ପଶିଲେ
ଗିରି ବନେ ଯାଇ ଆହା !
କି ଖାଆନ୍ତି, କାହିଁ ଯାପନ୍ତି ଯାମିନୀ,
କେ ଜାଣେ, ଚାଇଁକନାହା ।
ତଥାପି ତାପଙ୍କ ଗଣ୍ଡେ ବାଳ ବୃଦ୍ଧ
ନିତ୍ୟ ସ୍ମରନ୍ତି ନାମ;

ଶୁଣି ଶୁଣି ଦୂରେ ବଧିର ହୁଅଇ
ମିର୍ଜା ଶାସକ କାନ ।
କହିଲେ ତନ୍ତୁ ସେ, "ମନ୍ତ୍ରୀ ଯେବେ ତାର
ପର୍ଯ୍ୟନ୍ତ ମୁଁ ନ କରେ ତ୍ୟାଗ,
ଶାସନ ତ ରାଜ୍ୟ ହୋଇବ ଅଚଳ,
ତନ୍ଦ୍ରିବ ମୋତେ ମୋ କୋପ ।"

ସମଗ୍ର ଖୋର୍ଦ୍ଧା ରାଜ୍ୟ ପ୍ରଚାରିଲେ,
"ଦୁଷ୍ଟ ଦଳବେହେରାର
ମସ୍ତକ ଯେ ଛେଦ ଆଣିବ, ପାଇବ
ସୁନାଥାଳ ପୁରସ୍କାର ।"
ଯେତେ ଦଳବଳ ଥିଲେ ଖଣ୍ଡାୟତ ଘରେ
ଗଡ଼ୁଁ ଗଡ଼, ଗ୍ରାମୁଁ ଗ୍ରାମେ;
ଖଣ୍ଡାୟତ-ମାନ ଯେ ରଖିଛି, ତାଙ୍କୁ
ମରାଇ ନ ଦେବେ ପ୍ରାଣେ ।
ବୁଲନ୍ତି ବଧକ ଗୋଇନ୍ଦା ଘାତକ,
ଧନର କେଡ଼େ ମହିମା !
ମୁଣ୍ଡ ଯେବେ କାଟି ଆଣିବେ, ରହିବ-
ନାହିଁ ସୌଭାଗ୍ୟର ସୀମା ।
ଲାଗେ ଖଣ୍ଡଯୁଦ୍ଧ କେତେ ପଦା ବଲେ,
କେତେ କେ ହୁଅନ୍ତି ଖଣ୍ଡ;
ଘାତକ ଗୋଇନ୍ଦା ଲଢ଼ି ହୋଇଯାନ୍ତି
ଶୁଖାଶୁଖି ପୂର୍ବ ରଣ ।

ଦଳବେହେରାଙ୍କ ଘୁଇ ସେ ଘାତକେ
   ଖୋଜ ଯେ ପାଆନ୍ତି ନାହିଁ,
ସୁନାଥଳ ବୃଥା ଯିବ କି, ରାଇଜେ
   ଛନ ଲକ୍ଷ ପ୍ରଜା ଥାଇ ?

ଦିନେ ବନପ୍ରାନ୍ତେ ବମର୍ଦ୍ଦ ପଥିକ
   କହେ ବନବାସୀ ଭେଟି,
"ତାଙ୍କ ଯିବାର ପଥ କି ଜାଣିଛ ?
   କହ, ମୁଁ ଯିବଇଁ ସେଥି ।
କୈବର୍ତ୍ତ ଜାତି ମୋ, ବୁଡ଼ିଲା ନଉକା
   ଅଛଳ ଚଳିକା ଗର୍ଭେ,
ଗ୍ରାମେ ଘର ପୋଡ଼ି ଚୁଲିଗଲା ବାସ;
   ମରେଁ ମୁଁ ଦଇବ ଦର୍ପେ ।
ତାଙ୍କ ଗଡ଼ର ଦଳବେହେରାଙ୍କୁ
   ମାଗି କେ ନୋହୁଛି ବ୍ୟର୍ଥ;
ମୁଁ ଯିବ, କହିବ ମୋ ଦୁଃଖ ଗୁହାରି,
   ଲୋଡ଼ିବି ଧନ ଅର୍ଥ ।"
ଶୁଣି ବନବାସୀ ରୋଧି ଅଟ୍ଟହାସ,
   କହିଲେ, "ଆସ ମୋ ସାଥି,
ଅର୍ଥ ଯହିଁ କଷ୍ଟେ ମିଳିବ, ନଜେ ମୁଁ
   ନେଇଯିବି ବାଟ କାଟି ।"
ଆଗେ ବନବାସୀ ଚଳନ୍ତି, କୈବର୍ତ୍ତ
   ଅନୁସରେ ଭୂଲି କ୍ଳେଶ;

ସକାଳୁଁ ମଧ୍ୟାହ୍ନ ହୋଇଗଲା ଯହୁଁ,
ପଥଶ୍ରମ ହେଲା ଶେଷ ।

କାର୍ଯ୍ୟାଳୟେ ବସି ଫିରଙ୍ଗି ଶାସକ
ବହୁତ ଖୋରଧା ଗଡ଼;
ଛଳାଇ୍ଛି ଦଳବେହେରା ନ ମିଳେ,
କପାଳ ଠୁକନ୍ତି କରେ ।
ଟେକ ମୁଣ୍ଡ, ଯହିଁ ଦେଖିଲେ ଅଚହ୍ନା
ଜନ ଜେ ହୋଇଛୁ ଠିଆ,
ଦାଢ଼ି ନଖ ବଢ଼ି ବନବାସୀ ଜଣେ;
ଗୁଡ଼ ଚଳେ ଥରେ ହିଆ ।
ପୁଚ୍ଛିଲେ, "କ କାର୍ଯ୍ୟ ଆସିଛ, ଜଙ୍ଗଲ ?"
ଉତ୍ତର ଶୁଣିଲେ ଭବା—
"ତାପଙ୍ଗର ଦଳବେହେରା ମୁଣ୍ଡକୁ
ସୁନାଥଳ ଦେବ ପରା ?
ମୁହିଁ ସେହି ଦଳବେହେରା, ମୋତେ ଏ
କୈବର୍ତ୍ତ ଆଣିଛୁ ଧରି;
ବଡ଼ ଦୁଃଖୀ ଜନ, ବଢ଼ାଅ ତା ଧନ,
ନିଅ ମୋର ମୁଣ୍ଡ ବଳ ।"
ଶୁଣି କର୍ମଚାରୀ ପଡ଼ିଗଲେ ଶେଠା,
ପୋତିଲେ ଦୁର୍ଦ୍ଧର୍ଷ ମଥା;
କାର୍ଯ୍ୟାଳୟ ପାରି ନୀରବ ନିସ୍ତବ୍ଧ
ମୁଖେ କା ନ ଫୁଟେ କଥା ।

# ମାତୃଶ୍ରାଦ୍ଧେ

[ କବି ୧୯୨୨ ମସିହା ଶ୍ରାବଣ ମାସରେ ସିଂହଭୂମ ଛାଡ଼ି ନିଜ ଜନ୍ମସ୍ଥାନ ବାଣପୁରରେ ଆସି ରହିଲେ । ସେତେବେଳେ ତାଙ୍କର ଘୋର ଅର୍ଥସଂକଟ ଘଟିଥିଲା । ତହୁଁ ଯୋଡ଼ା ପାଚିଲା ତାଳ ଖାଇ ତାଙ୍କୁ କେତେ ଦିନ ରହିବାକୁ ପଡ଼ିଲା । ସ୍ୱର୍ଗତ ଶଶିଭୂଷଣ ରଥ ସେ ସମ୍ବାଦ ପାଇ, ଦଶ ଟଙ୍କା ତାଙ୍କୁ ଡାକଯୋଗେ ମନିଅର୍ଡ଼ରରେ ପଠାଇ, ଚାଉଳ କିଣିବାକୁ ଓ ବାଟଖର୍ଚ୍ଚ କରି ବ୍ରହ୍ମପୁର ଯିବାକୁ ପତ୍ର ଲେଖିଲେ । କବି ବ୍ରହ୍ମପୁର ଯାଇ ରଥ ମହାଶୟଙ୍କ ସାହାଯ୍ୟରେ ପୃଷ୍ଠା ଦୁଇ ଟଙ୍କା ହାରରେ ତତ୍କାଳୀନ 'ଗଂଜାମ ଷ୍ଟୋର' ପାଇଁ କେତେ ଖଣ୍ଡି ପାଠ୍ୟ ପୁସ୍ତକ ଲେଖିଲେ । ତହିଁରେ ତାଙ୍କ ଅର୍ଥାଭାବ ଆପାତତଃ ଦୂରହେଲା । ]

କେତେ ଭାବି ବିତିଗଲା ସତର ବରଷ,
ଆଜି, ବୋଉ, ପାଳୁଛି ମୁଁ ତୋ ଶ୍ରାଦ୍ଧ-ଦିବସ !
ଚାଲି ଯେବେ ଗଲୁ ମୁଦି ନୟନଯୁଗଳ,
ନ ଦେଖିଲି, ଗଡ଼ାଇଲୁ କେତେ ଅଶ୍ରୁଜଳ
ବୟସେ ବାଳୁତ ଥିଲି, ସଂସାର ଗଞ୍ଜଣା!
କୋମଳ ପରାଣେ ମୋରେ ନ ଥିଲାଟି ଜଣା
ତୋପାଦେ ବଢ଼ାଇଥିଲୁ, କୋଳୁଁ ନ ଓହ୍ଲାଇ;
ଚାଲିଗଲୁ ବେଳେ ମନେ ପଡ଼ିଲୁ କି ନାହିଁ ?
କହି ନାହୁଁ ଡାକି ପଦେ ବିଦାୟ ବଚନ,
ସେ ଶୂନ୍ୟତା ଦହେ ସିନା ମୋତେ ଆଜୀବନ ।
ଦୁଃଖୀ ଘର ସଂପଦ ତ ସ୍ନେହମିଶା କଥା,
ସେ ସମ୍ପଦୁଁ ବଞ୍ଚିତ କେ ସହିପାରେ ବ୍ୟଥା ?

ଆଜ ତ ଅଟଇ ଗହ୍ମାପୂର୍ଣ୍ଣିମୀ ଉତ୍ସବ,
ଶୁଭୁଛି ଚୌଦିଗେ ପୂଜା ଘଣ୍ଟାବାଦ୍ୟ ରବ ।
ହାସ୍ୟରୋଳ କୋଳାହଳେ ଉଲ୍ଲସିତ ମନ
ପିଠାପଣା ଖାଇ ଲୋକେ ଲଭନ୍ତି ତୃପତି ।
ତା ମଧ୍ୟେ ବସିଛି, ବୋଉ, ମୁଁ ତୋ ଶ୍ରାଦ୍ଧ ପାଇଁ,
ପିଣ୍ଡ ଲାଗି ଲଭେ ମୋର ଉପାଦାନ ନାହିଁ
ଦୁଇ ଦିନ କଟାଇଛି ଖାଇ ପୋଡ଼ା ଡାଲ,
ଆଜ କି ପାଲଟିଯିବ କାଲର କପାଳ ?
ମୋ ଲାଗି ମୋର ତ ନାହିଁ ଭାଳେ ଚିନ୍ତା ମନେ,
ନିଜର ବରଣ ଏ ମୋ ଏ ମର ଜୀବନେ ।
ପୋଡ଼ା ଡାଲେ ଶ୍ରାଦ୍ଧ ତୋର ହୋଇବ କେସନ ?
ତା ପୁଣି ଅଛବ ପିଲା ହାତ ଛୁଆଁ ଧନ ।

ପିଣ୍ଡଦାନେ ଲଭେ, ବୋଉ, ପ୍ରତ୍ୟୟ ମୋ ନାହିଁ;
ବାଢ଼ଇ ପିଣ୍ଡ ମୁଁ ଯିନା ଲୋକାଗୃର ପାଇଁ ।
ଜୀବୁଁ ଯେବେ ଗଲୁ ଚାଲି, ନ ଥିଲି ମୁଁ ପାଶେ,
ପାର୍ଥିବ ଉତ୍କର୍ଷ ଆଶେ ରହି ପରବାସେ ।
ସେ ଲାଗି ବିଦାୟ-ଅଶ୍ରୁ ଢାଳି ନାହିଁ ଲଭେ,
ପରେ ଯେ ଲଭିଲି ବାର୍ତ୍ତା ନବେଦ ଶରବେ ।
ତୋ ଶ୍ରାଦ୍ଧ ଏବେ ମୁଁ କରେଁ ନିଜ ଅଶ୍ରୁ ଜଳେ,
ମୁକ୍ତ ତୋର ଚିତ୍ତ ମୋର ଉଠିବା ମାତରେ ।
ମେତେବେଳେ ତୋ ମୂରତି ଦେଖେଁ ମୁଁ ନୟନେ,
ତୋ ସ୍ନେହ ଆଶିଷ, ବୋଉ, ଲଭଇଁ ଜୀବନେ ।

ଏ ଜୀବନ ନିଧି ମୋର ହୋଇଛୁ ସେ ସତ୍ୟ,
ରକ୍ତ ମାଂସ ଘଟ ଏ ମୋ ତହିଁ ଏକା ଗଢ଼ା ।

ଯୋଗ୍ୟ ଉପାଦାନ ବିନା ଶ୍ରାଦ୍ଧ ପିଣ୍ଡ ପାଇଁ
ଲୋକାଚାର ଆଜ, ବୋଉ, ମାନନ୍ତି ମୁଁ ନାହିଁ ।
ସ୍ୱରଗେ ନ ପାନ୍ତି ସେବେ ପିଣ୍ଡ ପିତୃଜନେ,
ହେଲୁ ନାହିଁ ଦୁଃଖ ପାଇଁ ଲବେ ମୋର ମନେ ।
ମାତ ପାଉଥିଲେ ତହୁଁ ସେ କଣିକା ଲେଶ,
ତୋ ଆତ୍ମା ଲଭିବ ସ୍ୱର୍ଗେ କି ଦାରୁଣ କ୍ଲେଶ !
ପୁଅ ଦୈନ୍ୟେ ଫାଟିଯିବ ଅଦେହ ତୋ ଛାତି,
ଦେବ ଲୋକ ଧୃତି ମ୍ଳାନ ହୋଇଯିବ କାନ୍ତି !
ଏ ତ ମୋର ଜୀବନର ନିତି ଦିନ କଥା,
ଏଥି ଜନସେବା ବ୍ରତେ ନିହିତ ମୋ ସତ୍ତା ।
ଏହାରେ କରିଛୁ ମୁହିଁ ମୋ ଶ୍ରେଷ୍ଠ ସମ୍ଭାର,
ତୋ ହୃଦେ କାଟିବ କପାଁ ମିଛେ ବ୍ୟଥା ଗାର ?

ରହିଥା ସନ୍ତୋଷେ, ବୋଉ, ତୋ ସୁର ନିବାସେ,
ପୁତ୍ର ନେତ୍ର ନୀରେ ଶ୍ରାଦ୍ଧ ଆହରି ଆଶ୍ୱାସେ ।
ମର୍ତ୍ତ୍ୟେ ମୁଁ ରହିଛୁ ଧରି ତୋ ସ୍ନେହେ ଜୀବନ୍ତ
ସେହି ତ ମୋ ମହାଲୋକ, ମୋ ଦିବ୍ୟ ରତନ ।
ତା ବିନା ପାର୍ଥିବ ଦେହେ କି ମୂଲ୍ୟ ଜୀବନେ ?
ତାକୁ ଛାଡ଼ି ମୁହୂର୍ତ୍ତେ ରହି ନ ପାରିବ କ୍ଷଣେ ।

ଜନ୍ମ ମୃତ୍ୟୁ ଲଗିଛି ତ ଏ ବିଶ୍ୱ ସଂସାରେ,
ଜନମୁ ଜନମ ଚଳେ କାଳ ପାରାବାରେ ।
ଦେହୁ ଦେହ ଯାଏ, ଛିଣ୍ଡି ମାୟାର ବନ୍ଧନ;
ପତି ପତ୍ନୀ ଭାଇ ଭଗ୍ନୀ ସବୁ ମନୋହନ ।
ମାତ୍ର ନିମ୍ନେ ବନ୍ଧା ଏକା ସୃଷ୍ଟି ପରମ୍ପରା,
ସେନେହୁ ସ୍ୱରଗ ଜନେ ମଣୁଛନ୍ତି ଧରା ।

## ମରାଳ ଦମ୍ପତି

ଏ ତ ସେ ଦିନର କଥା;
ମନୁ ଆଜ କେବେ ଯାଇନି ପାସୋର, ତିଳେ କମିନାହିଁ ବ୍ୟଥା;
ଦେଖିଛି ଯାହା ଯେ ନାଚୁଛି ନୟନେ,
ରସନାର ବାଣୀ ଶୁଭଇ ଶ୍ରବଣେ;
ଭୁଲିବାକୁ ମିନା ଚାହୁଁଛି, ଭୁଲିବା ପାଇଁ ଯେ ନ ମିଳେ ପନ୍ଥା ।

ଗୁନ୍ଥା ପ୍ରୀତିଡୋରେ ରହୁଥିଲେ କେଉଁଲେ ମରାଳ ଦମ୍ପତି ବେନି;
ନୟନୁ ନୟନେ ହୋଇ ଦେଖାଦେଖି ;
ହୃଦଗାଥା ନିତି ରଖୁଥିଲେ ଲେଖି;
ଏକ ଆନର ସେ ସେନେହ ବନ୍ଦନା ଭରନ୍ତି ଅନ୍ତରେ ଘେନି ।

ଦିନେ ନରହାତ ଦାରୁଣ ସଂଘାତ ଲଭିଲା ମରାଳ ପତି,
ସର୍ବାଙ୍ଗ ଶରୀରେ ଭୋଗିଲା ଯାତନା,

ବୋଧ ନ ପାରିଲୁ ମରଣ ମୂର୍ଚ୍ଛନା,
ପ୍ରାଣେଶ୍ୱରୀ ମୁଖ ଅନାଇଁ ଯେତେ ସେ ସଞ୍ଚିଲା ପରାଣେ ଶକ୍ତି ।

କେତେ କଲବଲ ହେଲା ସେ, ବିକଳ, କେତେ ହେଲା ଛଟପଟ,
ପଡ଼ିଲା ଉଠିଲା, ଆକୁଳେ ରଡ଼ିଲା,
ଦେଖିଥିଲେ ନଷ୍ଟେ ତରଳନ୍ତା ଶିଳା;
ବଜ୍ରେ ଗଢ଼ା ବୁକୁ ଫାଟି ତ ଯାଆନ୍ତା, କ ଛାର ମାନବ ଘଟ !

ହେନ ମୃତ୍ୟୁ ଭଙ୍ଗ ନେଇ ଯୁଗ ବୁକ, ପଡ଼ିଲା ମରାଳ ଶୋଇ;
ମରଣ ପରଶେ ତନୁ ତା ନିଶ୍ଚଳ,
ହୃଦୟ ପାଲଟି ଯାଇଛି ପଥର;
ମରାଳୀ ଜୀବନେ ପ୍ରଭାତ ସହସା ପ୍ରଦୋଷ ଗଲାଟି ହୋଇ ।

ଅଙ୍ଗ ଜଳ ଛାଡ଼ି, ବିରହେ ମରାଳୀ ଜଗିଲା ମରାଳ ଶବ;
ମୃତଗନ୍ଧ ମିଶିଗଲା ସମୀରଣେ,
କମ୍ପିଲା ଆକାଶ ମାଛି ଗଣଗଣେ,
ଗଗନେ ଶୁଭିଲା ବିକଟ ମାଂସାଶୀ କୁଆ ଶାଗୁଣାଙ୍କ ରବ ।

ଦିନ ଗତେ ଚନ୍ଦ୍ର ସୂର୍ଯ୍ୟ ଶୁଦ୍ଧପ୍ରଭୁ ଶବ ଘୂମାଇଲେ ବାସୁଁ;
ଜାଳିଥିଲେ, ଶୋକେ ଗୃଦ୍ଧିବ ମରାଳୀ,
ମଞ୍ଜୁ ତା ଜୀବନ ଯିବନାହିଁ ଛାଡ଼ି;
ଦେଖିଲେ, ଲୁହଲେ ସେ ଅଧୀର ଚରଣେ ପଛେ ଅନୁସରି ଆସୁ ।

ବେଢ଼ିବାର ପାଇଁ ତାରେ ଗୃହସାଇଁ ବେଗେ ବଢ଼ାଇଲେ କର;
ସେ କର ମରାଳୀ ଚୁମ୍ବିଲ ଚଞ୍ଚୁକେ,
ଶୁଭ୍ରମୁଖେ ତାଙ୍କ ଅନାଇଲା ଦୁଃଖେ;
ବାଣୀବିନା ନାହିଁ ଫୁଟିଲା କଣ୍ଠୁ ତା, ଝାଳିଲା ନେତ୍ରଣି ଭର ।

ଦେଖି ଗୃହପତି ଶୋକାକୁଳ ଅତି ନେତ୍ରୁ ଗଡ଼ାଇଲେ ଲୁହ;
ବୁଝିଲେ ମରାଳୀ ଯାଉଅଛି ସତି,
ନ ରହିବ ଏକା ତେଜ ପ୍ରାଣପତି;
ମରିବେ ଭୂତଳେ ଛାଡ଼ି ଦେଲେ ବାହ, ଶୂନ୍ୟ ହୋଇଲା ଗୃହ ।

## ପାଳିତ ବାଘଛୁଆ

ବନସ୍ଥଳ ବାଘଛୁଆ ଆଣି ଘରେ ନାଗ
ଆଦରେ ପାଳନ୍ତି ପୁଅ ସମ ଅଛି ତାକ;
ନିଜ ଶିଶୁ ପେଟୁ କାଟି ସ୍ତନୁ ଦିଏ କ୍ଷୀର,
ନାରୀହୃଦେ କ ବିଶାଳ ବିଧାନ ବିଧିର !
ମାଆ ତା ବନରୁ ଯେଇ ଜନମ କୋଳରେ,
ପେଟକୁ ଆହାର ଖୋଜି ଯାଇଥିଲା ଥରେ;
ସେ ସୁଯୋଗେ ବ୍ୟାଧ ତାକୁ ଆଣିଲା ହେଲା,
ବକଦେଲା; ନିଜେ ପୋଷି ପାରିବ ତ ନାହିଁ ।

ପୋଡ଼ିଛୁ ନାଗ୍ର ସେ ତାଙ୍କୁ ମାଆ ତରେ ସରେ,
ଓହ୍ଲାଇ ନ ଦଏ କୋଳୁ କୁଳିବାକୁ ତଳେ;
ନିଜ ଶିଶୁ କାନ୍ଦେ, ଯାଏ ଧୂଳି ଶେଯେ ଗଡ଼ି;
ବାଘଛୁଆଟିକି ସେହୁ ରଖେ ବୁକେ ଧରି ।

ମାଆ ଛୁଉ ଆମି ସେ ତ ହୋଇଛୁ ଛେଉଣ୍ଡ;
କେତେ ଦୁଃଖେ ଥିବ, ସିନା ଫିଟୁନାହିଁ ତୁଣ୍ଡ ।
ତା ଜନନୀ ସ୍ନେହ ଉତ୍ସ ଯାଏ ହେଲେ ବନ୍ଦ;
ବାଘ ଛୁଆ ହେଉଅଛି, ଛୁଆ ସେ ଅଟଇ ।

କୋଟରେ ଲେଉଟି ଦେଖେ ବନଜନ୍ତୁ ବାଘୁଣୀ
ନ ଦେଖି ଶିଶୁକୁ କାନ୍ଦେ ଝକଳେ ବାହୁନି ।
କୋଳର ରତନ ତାର ଗଲା କାହିଁ ଚୁଲି,
ବୁଝି ନ ପାରଇ କିମ୍ବାକେ ହୁଏ ଯେତେ ଘାରି ।
କୋଟରୁ ବାହାରି ଖୋଜେ ବନଯାଗା ଅନ୍ତରେ,
ନିଖୋଜ ଖୋଜି ଥକି ମୁଣ୍ଡି ବାହୁଡ଼େ କୋଟରେ ।
କେତେ ଦବା କେତେ ମଣି ପାହିଲା ତା ବନେ,
କୋଳର ଛୁଆଟି ନାହିଁ ଦେଖିଲା ନୟନେ ।
ନୋଇଲୁହେ ବନଦେବି ଟିଗ୍ରଶିଲ ଧରା;
ଯେତେ ବାଘ ଜନ୍ତୁ ପାଉ, ଜନନୀ ସେ ପରା ।

ମାଆ ଛୁଆ ଦୁହିଁଙ୍କର ଏ ଜନମ କି ପଟେ
ବନେ ବା ନଗରେ ଭେଟ ହେବ ଏ ମରତେ ?

ହେଲେ ଚେତନ ସିନା, ସୁଖ ଦୁଃଖ ସମାଚାର
ବୁଝାବୁଝି ହୁଅନ୍ତେ ସେ ବସି ଯେ ଯାହାର ।
ସେତେବେଳେ ଝୁଅ ମାଏ କହନ୍ତା ତ ଯେଇ
କି ରୂପେ ପାଳିଲି ନାଣି ଘରେ ତାକୁ ନେଇ ।
ଶୁଣି ତ ଚୁମ୍ବନ୍ତା ଗଣ୍ଡ କାନ୍ଧ ସ୍ନେହ ସୁଖେ
ନିତ ନରରକ୍ତ ଖୋଜ ପିଇଛୁ ଯେ ମୁଖେ ।

ଏବେ ତା ନୋହିବ, ମାତା ଶିଶୁ ଭେଟ ହେବେ
ହେବ ନାହିଁ, ସୂର୍ଯ୍ୟ ସିନା ଉଇଁବ ପଶ୍ଚିମେ ।
ବଢ଼ୁଥିବ ଶିଶୁ ନାଣି ସେନେହେ ପାଳିତ
ପୁରବାସେ ମନ ତୋଷେ ଭୁଲି ତା ଅତୀତ;
ଦୁଧ ଭାତ ମାଂସେ ପୁଷ୍ଟ କରୁଥିବ ତନୁ,
ବନଦେଶ କଥାମାନ ପୋଛିଦେଇ ମନୁ ।
ମାସ ମାଆ ବନେ ଏକ ଅନନ୍ତ ବିଚ୍ଛେଦେ
ଝୁଆଟିକି ଝୁରି ଆପୁ କନ୍ଦାଇବ ଖେଦେ;
ଅନ୍ତିମ ଶୟନେ ଯେବେ ମୁଦିବ ନୟନ,
ଖୋଜିବ ସେ ହଜିଲାଛି ପରାଣର ଧନ ।
ତା ଦୁଃଖୁଁ ଜଣେକ ଝୁଅ ନ ପାରିବ ବୁଝି;
କି ପ୍ରପଞ୍ଚ ସୃଷ୍ଟି ତୁମ୍ଭ ଅଛି, ବନ୍ଧୁ, ମୁଞ୍ଜି !

# ଯିବ ବ୍ୟର୍ଥେ କେବେ ?

ବନ ବାଘ ଛୁଆ, ଆସିଲୁ ଡେଙ୍କ ପିଂଜରେ ମୋର,
ମୋଟା ହେଲୁ ଘରେ ନଗରେ ଆଶ୍ରି ମାନବ କୋଳ ।
ମାଆ ସ୍ନେହୁ ଯେଣୁ ବଞ୍ଚିତ ହେଲୁ ଶିଶୁ କାଳୁଟି,
ପାଳିଲି ଯତନେ କୋଳରେ ମୁଁ ମଣି ଆପଣା ସୁତ ।
ତୁ ଯେ ବାଘ, ମୁହିଁ ମନୁଜ, ଜ୍ଞାନ ଦେଲି ପାସୋରି;
ଦିନୁ ଦିନ ଦୃଢ଼େ ବାନ୍ଧିଲି ମାତୃ ମମତା ଡୋର ।

ବନ ମୃଗ ଭୁଲି ସତେ, ତୁ ଗଲୁ ସଉଧେ ରହି;
ବନଦେଶେ ଭାଷା କାନନେ ମୋ ମଧୁ ଗର୍ଜନେ କହି ।
ନ ଶୋଇଛୁ ତୁହି ଯଦି, ମୋ ନାହିଁ ପଲଂକ ଗୃହେ;
ନାହିଁ ଦୁଧସର ଲବଣୀ, ତୁହି ନ ଛୁଇଁ ମୁହେଁ ।
ଦିନୁ ଦିନ ଯେତେ ବଢ଼ିଲୁ, ଅଳି ବଢ଼ିଲ ତୋର;
ଟାଣୁ ଟାଣ ହେଲା ସେତିକି ସ୍ନେହ ମମତା ଡୋର ।

ସେ ଡୋର ଛିଣ୍ଡାଇ, ବାଘୁଆ, ତୁ ଏବେ ପାଇଛୁ ଚାଲି,
ନିମିଷକେ ମୋରେ ନଖରେ ତୋର ବଚ୍ଛେଦେ ଘାରି ।
ସ୍ତନୁ କ୍ଷୀର ଦେଇ ପାଳିବା ଗଲା ସତ ଜୀବନେ,
ଦାନ୍ତ ଚିହ୍ନମାନ ରହିବ କେତେ ଦିନ ବା ସ୍ତନେ ?
ନଖକ୍ଷତ ଜନମ ଲିଭିବ ଦେହୁ ଗୋଟିକ ଗୋଟି;
ତୁ ଯେ ଚାଲିଗଲୁ, ହୃଦୟେ ମୋରେ ବିଧାଦେ ଚୋଟ ।

ଆସିଥିଲୁ ଯେବେ, ଆସିଲୁ ଭୁହ୍ନ ଅଚହ୍ନା ଦେଶେ;
ହୃଦ ସ୍ନେହ ପାତ୍ର ନେଲ ମୁଁ ପର ଜନମ ବେଶେ ।
ମୋହି ମୁଁ ଜନମ ଏବେ ତ ଦୈନ୍ୟେ ରହିଲି ପଡ଼ି,
ଶୂନ୍ୟ କୋଳଟି ମୋ ସମ୍ପାଦ, ଚିର ସନ୍ତାପେ ଜଳି ।
କାଳସ୍ରୋତେ ଭାସିଗଲୁ ତୁ ପୁଣି ଅଚହ୍ନା ପୁରେ;
ଭାଗିଲେଣି ମୋର ତ, ଯାଇ ତୁ ସତେ ଲଗିଚୁ କୂଳେ !

ଏ ଜୀବନ ମୃତ୍ତିକା କି ପୋଛି ଦେଇଛୁ ମନୁ,
ଏ ବାସ୍ପ ତେଜ ଯେ ପଲକେଁ ଭୂଲିଗଲା ତୋ ତନୁ ?
ବନ କୋଠର କି ଟୁଟିଲୁ, ହିଂସ୍ର ବାଘୁଣୀ କୋଳ ?
କି ଅବା ଇଚ୍ଛିଲୁ, ଶୁଣିବୁ ବନ୍ୟ ଚରଣୀ ରୋଳ ?
ଏ ଜନମ ଲାଗି ନୟନ ମୁଦି ଗଲୁ ଯେ ଭୁଲି;
ମାଆ କୋଳ ନାହିଁ ପାଇବୁ, ଗଲୁ ସିନା ତୁ ଟାଳି ?

ମୁହିଁ ଯେ ରହିଲି ଏ ମଞ୍ଚେ ତୋତେ ବରଜି ଏକା,
ମୋ ସାରା ଜୀବନ ଅନ୍ବେଷେ ତୋ'ର ଲୋଡ଼ିବ ଦେଖା ।
ମୁହିଁ ମଧ ଯେବେ ତୋ ଭଳି ଯିବି ଏ ଭବ ତେଜି;
ଆତ୍ମା ମୋ ତୋ ଲାଗି ଭ୍ରମିବ, ତୋର ସୋହାଗ ହେଜି
ସ୍ନେହ ଯେ ପଦାର୍ଥ ଏ ବିଶ୍ୱେ, ଯିବ ବେଅର୍ଥେ କେବେ ?
ଅନନ୍ତ ବିଦାୟେ ସିନା ତୁ ଭୁଲିଯାଇଛୁ ଏବେ ।

# ସ୍ୱର୍ଣ୍ଣାକ୍ଷରେ

ବ୍ୟୋମରାଜ୍ୟ ଚନ୍ଦ୍ର ତାରା ବର୍ଷ୍ଣ ଆବର୍ତ୍ତନେ
ଘଟିଲାଣି ସାତ ଶ ବରଷ;
କେତେ ଗିରି, କେତେ ଶୃଙ୍ଗ ପ୍ରସ୍ତର ସଉଧ
ଭାଙ୍ଗି ଲାଣି କାଳର ଚରଣ ।

କେତେ ତ ଦୁର୍ଲ୍ଲଭ ମଧୁ ଢାଳିଲାଣି ଭବେ,
କେତେ ସ୍ମୃତି ଗଲାଣି ପାସୋର;
ଗୋଟିଏ ଘଟଣା କଲୁ ଶତ ଲକ୍ଷ ହୃଦେ
ସ୍ୱର୍ଣ୍ଣାକ୍ଷରେ ରହିଛି ସ୍ୱାକ୍ଷର ।

ଚନ୍ଦ୍ରକ୍ଷେତ୍ରେ ଲାଗିଅଛି ମନ୍ଦିର ନିର୍ମାଣ,
ଶିଳ୍ପେ ହେବେ ସଦେହେ ସବିତା;
ରତ୍ନା ତାର ମେଘମାଳା ଛୁଇଁବ ଗରବେ,
ସୌଦାମିନୀ ହେବ ଝାଲେ ଚିନ୍ତା ।

ବାର ଶହ ଶିଳ୍ପୀ, ଜନ୍ତୁ ବ୍ୟାପାରିତ କାର୍ଯ୍ୟେ,
ନ ଜାଣନ୍ତି ଆହାର ବିରାମ;
ଛନ୍ନ କୋଣ ଦନ୍ତ ବ୍ୟାପି ପଡ଼ିଛି ଗୁଜଣି,
ଦିବା ନିଶି ଲାଗିଅଛି କାମ ।

ସବୁ ମଧ୍ୟେ ଧାନେ ଉତ୍ତ ଚନ୍ଦାଣି ରତନ,
ଗଢ଼ୁଛି ସେ ନବତ୍ରନ୍ଦ ପାନ୍ତ;
ମୁଖଶାଳା ଦ୍ୱାରୁ ଦେବ ଗରିମା ସୃଜଇ,
ପ୍ରକଟିବ ସୁଷମା ଚରାନ୍ତ ।

ସକାଳେ ଆସଇ ଭୁଞ୍ଜି ବାସେ କାଟଗର,
ଦିନସାରା କରଇ ସାଧନା,
ସନଙ୍କ ପୁଣି ମୋର ମୂର୍ତ୍ତେ ଛୁଏଁ ଅନ୍ନଜଳ;
ପାଷାଣେ ତ ଆଙ୍କୁଛି କଳ୍ପନା ।

ସେ ପାଷାଣୁ ନୟନ ତା ନ ମେଲେ ପଲକେ,
ଧ୍ୟାନ ଶ୍ରମେ ଶୁଖିଯାଏ ପାଟି;
ବାମ କର ପଛେ ମାଝ ଦିଏ ତା ମତାଇ,
ପାନ ଖିଲ ଆଟେ ଆଣି ନାସ୍ତ ।

କେତେ ଖିଲ ଖାଏ ନିତ, ନାହିଁ ତା କଳନା
ପାନେ ତାର ବଢ଼ଇ ଧିଆନ;
ଦିନୁ ଦିନ ଖାଇ ସେହି ଏକା ମୁଖବେଚ
ପିଡା ତାକୁ ଲାଗିଲାଣି ପାନ ।

ନଅ ଋତୁ ନବଗ୍ରହେ ଲାଗିଛି ସମୟ,
ନବ ମୂର୍ତ୍ତି ସରିଲାଣି ଗଢ଼ା;

ଦଶମ ରନ୍ଧ୍ରୁ ତା ଅଗ୍ନି ପ୍ରବେଶ ବସନ୍ତ,
ନାହିଁ କାମ ସୁଆଁଗିବା ଛଡ଼ା ।

ବଚନେ ଲଗିଛି ନେତ୍ର, ନ ପଡ଼େ ପଲକ,
ପାନ ଲଗି ପାତିଦେଲା କର;
ପଡ଼ନ୍ତେ ଖିଲ ତା ତହିଁ, ଦେଲା ନେଇ ମୁଖେ,
ଆଖି ପତା ହୁଏ ଥର ଥର ।

ପରର୍ମ ମଧୁର ସ୍ୱାଦ ଲଭିଲା ରସନା,
ବଦନେ ତା ଚହଟିଲା ବାସ;
ରୋମାଞ୍ଚ ହୋଇଲା ଭବ ଅଷ୍ଟାଙ୍ଗ ଶରୀରେ,
ଅଙ୍ଗ ଅଙ୍ଗେ ପୁଲକ ପ୍ରକାଶ ।

“ଏ ନୁହେ ତ ଘରେ ଭଙ୍ଗା ନାଡ଼ିହାତ ପାନ”,
କାରିଗର ବିଚାରଇ ମନେ;
ନିକଟେ ବୁଲାଇ ମୁହିଁ, ପୃଷ୍ଠଦେଶେ ତାର
ଉଭା ନୃପ, ଦେଖିଲା ସମ୍ଭ୍ରମେ ।

କାମୁଡ଼ି ଦେଲା ନିଜ ଜିଭ, ହେଲା ନତଜାନୁ,
କ୍ଷମା ଭିକ୍ଷା କଲା ଅବହିତେ;
“ଏ କି ଦଶା ଅଭାଜନେ !” କହିବ ଇଚ୍ଛିଲା,
ଜିହ୍ବା ତାର ରହିଗଲା ଶନ୍ତ ।

ଉତ୍କଳ ନୃମଣିବର ବୀର ନରସିଂହ
ଉଠାଇଲେ ତଳୁ କର ଧରି
କହିଲେ, "ଧନ୍ୟ ମୁଁ ହେଲି, ବୀର ଜଗୁ ବଢାଣି,
ଏ ସାମାନ୍ୟ ସେବା ତୋ ଆଚରି ।

ମୁଁ ସିନା ମନୁଷ୍ୟକୁଳେ ହୋଇଛି ନୃପତି,
ଲଭି ହେଲେ ପିତୃଦତ୍ତ ରାଜ୍ୟ;
ତୁହି ତ ସ୍ୱଗୁଣେ ବଡ଼, କାରିଗରେ ରଜା,
ତେଣୁ ପୂଜ୍ୟ, ବୀର ନମସ୍ୟ ଅର୍ଘ୍ୟ ।"

ସେ ଦିନୁ ଏ ଗ୍ରହ ତାରା ବହୁ ଆବର୍ତ୍ତନେ
ବିତିଲାଣି ସାତ ଶ ବରଷ;
କେତେ ଗିରି, କେତେ ତୁଙ୍ଗ ପ୍ରସ୍ତର ସଉଧ
ଭାଙ୍ଗିଲାଣି କାଳର ଚରଣ ।

କେତେ ତ ଦୁର୍ଲ୍ଲଭ ନିଧି ହଜିଲାଣି ଭବେ,
କେତେ ସ୍ମୃତି ଗଲାଣି ପାସୋରି;
ଅଘଟନ ଏ ଘଟଣା ତେଲଷ ହୃଦେ
ସ୍ୱର୍ଣ୍ଣାକ୍ଷରେ ରହିଛି ଭାସ୍ୱର ।

# ନାସ୍ତିକର ଭକ୍ତି

[ କବି ନିଜେ ଜଣେ ନାସ୍ତିକ କହିଲେ ଚଳେ । ପ୍ରଥମ ପଦ୍ୟାଂଶରେ ବର୍ଣ୍ଣିତ ଗୁଣ ବା ଦୋଷ ସବୁ ତାଙ୍କର ରହିଛି । ସେ ଦେବତାଦର୍ଶନ ନିମନ୍ତେ କ୍ୱଚିତ ମନ୍ଦିରକୁ ଯାଆନ୍ତି । କିନ୍ତୁ କେବେ କିପରି ଏକା ଗଲେ ସେ ତଳେ ମୁଣ୍ଡ ଲଗାଇ ପ୍ରଣାମ କରିବାର ଦେଖାଯାଏ । ନିଭୃତରେ ବସି ସେ ବେଳେବେଳେ କୌଣସି ସ୍ତୋତ୍ର ବା ପଦ୍ୟ ଆବୃତ୍ତି କରି କିମ୍ବା ନିଜେ ରଚନା କରି ଗୀତ ଗାଇ ଅଶ୍ରୁ ଗଡ଼ାଇବାର ମଧ୍ୟ ଦେଖାଯାଏ । ]

କାହାକୁ ଅଛପା ଅଛି, ମାନବ ସମାଜେ
ସେ ଅତି ନାସ୍ତିକ ଜଣେ ମନେ ବାକ୍ୟେ କାର୍ଯ୍ୟେ ?
ବ୍ରାହ୍ମଣକୁଳେ ତା ଜନ୍ମ, ନାହିଁ ଉପବୀତ;
ମ୍ଳେଚ୍ଛ ଅନ୍ନ ନ ଭୁଞ୍ଜିଲେ, ତୃପ୍ତ ନୁହେଁ ଚିତ୍ତ ।
ହରି ନାମ ମୁଖେ ଦିନେ ନ ଧରେ ସ୍ୱପନେ,
ଧ୍ୟାନେ ନାହିଁ ମତି, ନାହିଁ ଦେବ ଆରାଧନେ ।
ଆପଣା ବିବେକ ବୁଦ୍ଧି କରିଯାଏ କର୍ମ;
ତହିଁ ତା ସନ୍ତୋଷ, ତାକୁ ମନେ ଶ୍ରେଷ୍ଠ ଧର୍ମ ।
ରାଜ୍ୟ ନୃପ ପାଶେ ହାତ ନ ଯୋଡ଼ିଛି ତାର,
ଶାସକେ ପଦସ୍ଥେ ଦୂରୁଁ କରଇ ଜୁହାର ।

ସେହି ସେ ନାସ୍ତିକେ ଦିନେ ଦେଖି ଅକସ୍ମାତ,
ଅବିଶ୍ୱାସ ନିଜ ନେତ୍ରେ ହେଲା ମୋର ଜାତ ।
ନୀଳାଚଳେ ଜଗନ୍ନାଥ ମନ୍ଦିରେ ଏକାକୀ,
ପ୍ରଣମେ ସେ ଏକ ଧ୍ୟାନେ ମୁଦି ବେନି ଆଖି ।

ତତେ କୌତୂହଳ ହେଲେ ନ ସମ୍ଭାଳି ପାରେ,
"ଏ କି କର, ହେ ନାସ୍ତିକ ?" ହେଲି ମୁଁ ପଚାରେ;
"ଭଣ୍ଡ ତୁମେ, ହିଂସାପ୍ରିୟ, ପ୍ରତାରକ ଅତି,
ତୁମ୍ଭେ ଦେବେ ନାହିଁ ମାନ, ନ ଦେଖାଅ ଭକ୍ତି ।
ଏତେ ମିଥ୍ୟାତ୍ୱରେ କିମ୍ପା ଗଢ଼ିଛ ଜୀବନ,
ନ ଜାଣ କି, ସତ୍ୟ ଅଟେ ଭବେ ମହାଧନ ?
ବୃଥା ଏତେ ଆସ୍ଫାଳନ, ମିଛେ ଏତେ ଗର୍ବ;
ନତ ଶିରେ ଦେବେ ଯେବେ ମାଗିପାର ସର୍ବ ।"

ଶୁଣି କର୍ଣ୍ଣେ ନାସ୍ତିକ ସେ କରିଲା ଉତ୍ତର,
"କେବେ ମୁଁ କି ନ ମାନୁଛି ଏକଲା ଈଶ୍ୱର ?
କାଠେ ଗଢ଼ା ଜଗନ୍ନାଥ, ନ ଅଛି ଜୀବନ;
ନ ଦେଇ ପାରିବେ କାରେ ଧନ, ମାନ, ଜନ ।
ଗଛ ମଧ ଗଢ଼ା କାଠେ, ଅଛି ଜୀଅ ତାର;
ଦେଇପାରେ ଫୁଲ ଫଳ ବିପୁଳ ସମ୍ଭାର !
ଏ ଅଟେ ନିର୍ଜୀବ ଦେବ ଗଢ଼ା ନର ହାତେ,
ନିମିଷକେ ଭାଙ୍ଗିଯିବ ଅଳପ ଆଘାତେ ।
ନିଷ୍ପ୍ରାଣ ଅନର୍ନା ଯେଣୁ ଲୋଡ଼ିବ ସହାରେ,
ଏ ବିନା କେ ପୂଜାଯୋଗ୍ୟ, କହ, ଅଛି ତାରେ ?
ଲକ୍ଷ୍ମୀ, ବିଷ୍ଣୁ, ଉଚ୍ଚ ଧର୍ମ, ବୁଝେଁ ମୁଁ ନିକର;
ତେଣୁ ପୂଜେ କାଠ ଢିଅଁ, ଅର୍ଜଇ ପଥର ।
ନାସ୍ତିକ ମୁଁ ବଡ଼ ପାଖେ, ସାନର ନିକଟ,
ମାଗେ ନାହିଁ ଧନ, ମାନ, ପଦ ବା ମହତ୍ତ୍ୱ ।"

## ବିଧାତା କି ଅନ୍ଧ ?

୧

ଏଧ କୋଣ କମ୍ପେ ଏ ଯେ ଏଡ଼େ ଚହୂଆର
ଚଳିଅଛି ମାଡ଼ି ରାଜପଥ !
ଗାଡ଼ି ଘୋଡ଼ା ଅଗଣିତ, ଦଳେ ମୁଣ୍ଡ-ମାଳ,
ବାଦ୍ୟ ଧ୍ୱନି ଉଠେ ଅବିରତ ।
ବିବାହ ଆନନ୍ଦ ମେଳ ନବୀନ ଦମ୍ପତି
ପରିଣୀତ ଅଚ୍ଛେଦ୍ୟ ବନ୍ଧନେ;
ଜଣେ ସ୍ୱୟଂ କାମଦେବ, ଅପର କି ରତି,
ପ୍ରୀତିଡୋରେ ବନ୍ଧା ଜଣେ ଜଣେ ।
ନଗର, ସରଣି, ହର୍ମ୍ୟ, ବିପଣି, ଶିଖର
ଦୃଷ୍ଟି ସବୁ ଦର୍ଶକ ନୟନେ;
ଯେତେ ସବେ ଯେ ଯା' କାର୍ଯ୍ୟ ଲକ୍ଷ ନାଗରର
ସେ ସମ୍ଭାର ଦେଖନ୍ତି ଆଗ୍ରହେ ।

୨

ସକଳ ଜନତା ମଧ୍ୟେ ଉଭା ହୋଇଁ ଜଣେ,
କି ଉଦାସେ ରହିଛି ଅନାଇ !
ଚହୂଆର ଶୋଭା ସ୍ପର୍ଶ ନ କରେ ନୟନେ,
ମୁଖେ ହସ ଉକୁଛି କିପାଇଁ ?
ଗଣେ ଏକ ଦୁଇ ତିନି ଆଙ୍ଗୁଠିର ପବେ,
ଥରେ ଗଣି ଗଣେ ପୁଣି ଥରେ;

ତୃତୀୟ ଦିବସେ ପର ଚଉଠୀ ଉତ୍ସବେ
ବଡ଼ା ଭୋଜ ହେବ ବରଘରେ ।
ଯେ ଅଛି ନିରନ୍ନ ଜନ, ଧରି ଭିକ୍ଷାଥାଳ
ତିନ ଦିନେ ଛୁଏଁ ଥରେ ଅନ୍ନ;
ଖିର ପିଠା କଥା ଭାବି ତୁଣ୍ଡୁ ବହେ ଲାଳ,
ଆଶାବନ୍ଧେ ଛନ୍ନ ହୁଏ ମନ ।

୩

ଚଉଠୀ ଉତ୍ସବ ହେଲା ତୃତୀୟ ଦିବସେ;
ଭୋଜ ଲାଗି ଆମନ୍ତ୍ରିତ ଜନେ
ଭୋଜନ ପ୍ରାଙ୍ଗଣ ଦ୍ୱାର ଅତନମି ହର୍ଷେ
ଚାଲିଛନ୍ତି ଜଣ ପରେ ଜଣେ ।
ପେଡ଼ିଲୁଗା ପରିହିତ ସୁବେଶୀଙ୍କ କାୟ
ଜଣୁ ଜଣେ ହୋଇଯାନ୍ତି ପାର
ସୁରଲୋକାଗତ ଦେବ ପଙ୍କତ ପରାୟେ;
ଅସରନ୍ତ ଲାଗିଅଛି ଧାଡ଼ ।
ତା ମଧ୍ୟେ ଏ କିଏ ଜୀର୍ଣ୍ଣ ଶୀର୍ଣ୍ଣବପୁ ପ୍ରାଣୀ !
କଙ୍କାଳେ କି ଗଠିତ କେବଳ ?
ଲୁଚି ଚାଲି ପଶିବାକୁ ଆସିଅଛି ଜାଣି,
ଜଳୁଅଛି ଯେଣୁ ତା ଜଠର ।

୪

ସହସା ଶୁଭିଲା ବଜ୍ର ବତାଡ଼ନ ଦ୍ୱାରେ;
ଆଚମ୍ବିତେ ଚାହିଁଲେ ସରବେ,

ଧୂମ୍ରାକ୍ଷ ଚଣ୍ଡ ମୁଣ୍ଡ ପ୍ରହାର କଲାକେ,
ଯଥା ଦେବ ଦାନବ ଆହବେ ।
ଆମନ୍ତ୍ରିତ ବନ୍ଧୁ ସମେ ବୃନ୍ଦକର୍ତ୍ତା ସତେ,
ଗୁଡ଼ଦେବେ ଅନାହୂତ ଜଣେ ?
ଯେ ପୁଣି ମାନବସ୍ତଜ୍ୟେ ଅରଷ୍ଠ ଏ ମର୍ତ୍ତ୍ୟ,
ତା ସ୍ଥାନ କି ଏଭଳି ଗହନେ ?
ଏତେ ଥିଲେ ଆମନ୍ତ୍ରିତ ସୁଧୀ ସଦାଗ୍ରସ୍ତ,
ନ କଲେ ତ ଜଣେ ନିବାରଣ;
କାଢ଼ ପକାଇଲ ନିଜ ବାଟେ ତା ଉକାସ,
ଅନାରତେ ଚଳିଲ ଭୋଜନ ।

୪

ଭୁଲି ଯିବା ଗଲ ଚନ୍ଦ୍ରୁଁ ନିଶାନ ଲଙ୍କାଶୀ,
ପଥଶ୍ରମ ପାଉଥିବ ସନ୍ଧ ?
ଆଶାବଳେ ଟାଣିହୋଇ ଥିଲ ଯିବା ଆସି,
ପାଦେ ଶୀର୍ଣ୍ଣ କଳେବର ବନ୍ଧ ।
ନଗର କି ଯେ ଯାଉଥିବ ତା ଗନ୍ତବ୍ୟ ସ୍ଥଳେ ?
କେତେବ ପୁଣି ସ୍ମୃତିଥିବ 'ଅନ୍ନ' !
ଆଉ କି ଜୀବନେ କେବେ କାହା ଭୋଜଘରେ
ଯିବାକୁ ସେ କରିଥିବ ମନ ?
କଥାଟା କି ଅଙ୍କୁ ଶୂନ୍ୟ ଏକ ପ୍ରଚଳ ସଂସାରେ ?
ଏ ସମାଜ ସୃଷ୍ଟିଅଙ୍କୁ ହାତେ,
ଦରିଦ୍ର ମରିଲ ଯଦି ଧନୀଙ୍କ ପ୍ରହାରେ,
ବଳସ୍ଥିତ ସବଳ ଆଘାତେ ?

# ଅସ୍ଥି ଦାନ

ବହୁ ଯୁଗ ପୂର୍ବେ          ଆର୍ଯ୍ୟାବର୍ତ୍ତ ଭୂମେ
ଦୈତ୍ୟରାଜ ବୃତ୍ରାସୁର,
ସ୍ୱର୍ଗ-ମର୍ତ୍ତ୍ୟ ନିଜ          ରାଜତ୍ୱ ବସାଇ,
ଜିଣିଲା ପାତାଳ ପୁର ।
ତହିଁ ପରେ ତାର          ଅତ୍ୟାଚାରେ କେହି
ଦଣ୍ଡେ ନ ପାରିଲେ ଚଳି;
ମର୍ତ୍ତ୍ୟେ ତ୍ରାହି ତ୍ରାହି          ଡାକିଲେ ମାନବେ,
ପାତାଳେ ଥରିଲା ବଳୀ ।
ସ୍ୱର୍ଗେ ଇନ୍ଦ୍ର ଆଦି          ଦେବତା ନିକର
ନିଷ୍କୃତି ଲଭିବା ପାଇଁ,
କର ଯୋଡ଼ି ଉଭା          ବ୍ରହ୍ମାଙ୍କ ସମୀପେ,
ଜଣାଇଲେ, "କର ତ୍ରାହି" ।
ଶୁଣି ବ୍ରହ୍ମା କର୍ଣ୍ଣେ          ଗୁହାରି, କହିଲେ,
"ଉପାୟ ନାହିଁ ମୋ ହାତେ;
ସବୁ ଶସ୍ତ୍ର ମୋର          ହେଲାଣି ବ୍ୟାହତ
ତା ଶରୀର ପ୍ରତିଘାତେ ।
ଏକ ମାତ୍ର, ଯେବେ          ଦଧୀଚି ମହର୍ଷି
ଦେବେ ନିଜ ଅସ୍ଥି ଦେହୁ,
ତହିଁ ବଜ୍ର ସୃଜି          ପେଷିଲେ ଶଚୀଶ,
ଆଉ ନ ବର୍ତ୍ତିବ ସେହୁ ।"

ତପସ୍ୟା ତନ୍ମୟ ତାପସ ଦଧୀଚ,
ସ୍ୱକୃତି ଭସ୍ମର କାନ୍ତି;
ଦେହ ନାହିଁ, ଖାଲି ଅସ୍ଥି ପିଣ୍ଡ ଏବା,
ଦେଖନ୍ତେ ହୁଅଇ ଭ୍ରାନ୍ତି ।
ଦେବଗଣେ ପାଶେ ହୁଅନ୍ତେ ଆଗତ
ଦେଖିଲେ ତାପସ ଚାହିଁ;
କହିଲେ, "ଧ୍ୟାନେ ମୁଁ ବୁଝିଛି ତ ସାଇଁଛି,
ଆସିଛ, ଦେବେ, କପାଇଁ ?
ଜଗତ କଲ୍ୟାଣ ସାଧିବାକୁ ସିନା
ଲଭିଛି ମୁଁ ଏ ଜୀବନ;
ତ୍ରିଭୁବନ ଯେବେ କଲ୍ୟାଣ ଭଜିବ,
ବଞ୍ଚିବା ମୋ ଅକାରଣ ।
ମୋ ଦେହ ଯେବେ ଦେହ ଅସ୍ଥି ନେଲେ ଯାହା
ପାଇବେ ତ୍ରିଲୋକବାସୀ,
ବୃଥାକି ଫେରିବ ସ୍ୱର୍ଗର ଦେବତା
ସକଳେ ମୋ ପାଶେ ଆସି ?"
କହି, ମୁନିବର ତେଜି କଳେବର
ଚଳିଲେ ଶମନଧାମ;
ବଜ୍ରଧର ହତ ସାଧିଲେ ବୃତ୍ରକୁ,
ମର୍ତ୍ତ୍ୟେ ଯା ରହିଲା ନାମ ।

# ଆସନ୍ତା କାଲି

[କଲିକତାରୁ ପ୍ରକାଶିତ ହେଉଥିବା ମାସିକ ପତ୍ର 'ଆସନ୍ତା କାଲି' ନାମରେ ଅନୁରୁଦ୍ଧ ହୋଇ କବି 'ଆସନ୍ତା କାଲି' ନାମକ ଗୋଟିଏ ପଦ୍ୟ ଲେଖିଥିଲେ । ଏ ପଦ୍ୟଟି ସେହି ଭିତ୍ତିରେ ଲିଖିତ । ]

ସୃଷ୍ଟିର ଅନନ୍ତ ପଥେ ଗମି କାଳଯାତ୍ରୀ
ଯୁଗୁଁ ଯୁଗେ ହୁଏ ଅଗ୍ରସର;
ସେ ଯାତ୍ରାର ଆଦି କେବେ, କେବେ ଅବା ଅନ୍ତ
ବର୍ଣ୍ଣେ ବର୍ଣ୍ଣେ ସଦା ଅଗୋଚର ।
ମାନବ-କଳ୍ପିତ ଏ ଯେ ସତ୍ୟ ତ୍ରେତା ଆଦି
ଶାସ୍ତ୍ରଗତ କ୍ରମିକ ବିଭାଗ
ସେ ଘୋର ଅନନ୍ତ ମଧ୍ୟେ କ୍ଷୁଦ୍ର ବନ୍ଦ୍ ସୀମା,
ସୀମାବଦ୍ଧ ସଙ୍କୁଚିତ ମାର୍ଗ ।
ଯେ ମାର୍ଗେ ସ୍ୱଚ୍ଛନ୍ଦ ଯାତ୍ରୀ ଦେଖନ୍ତି ଉଦାସେ
ଜନ୍ମେ କେତେ ରବି ଗ୍ରହରାଜ;
କେତେ ତ ଜଗତ ନୂଆ ଜନ୍ମିଛନ୍ତି, କେତେ
ପୁରାତନ ପଡ଼ିଛନ୍ତି ଭାଜି ।
କେତେ ମହାସିନ୍ଧୁ ଶୁଖି ପାଲଟିଛି ମରୁ,
କେତେ ଶୈଳ ପଡ଼ିଛନ୍ତି ଲୋଟି;
ଅର୍ବୁଦ ସାମ୍ରାଜ୍ୟ ଧ୍ୱଂସ ଲଭିଛି, ପଲକେ
ନୂଆ ମଞ୍ଚ ଉଠିଅଛି କୋଟି ।
ମନୁ ମନ୍ୱନ୍ତର ବ୍ୟାପି ଭୁଙ୍ଗ ପରିବର୍ତ୍ତେ
ଭଙ୍ଗା ଗଢ଼ା ଲାଗିଛି ବଧାନେ;
କେତେ ମହା ଯୋଦ୍ଧା, କେତେ ବସାନ୍ତ ନୃପଷ୍ଠ
ଚୂର୍ଣ୍ଣ ଗର୍ବ ଶାୟିତ ଶ୍ମଶାନେ ।

ସେ ଶ୍ମଶାନ ଭିତ୍ତି ଉପରେ ଗଢ଼ା ଏ ସଂସାର
ଲୁବେ ଆଜ ଅଛୁ ମୁଣ୍ଡ ଟେକ;
କେ କହିପାରିବ, ଅଛି ଅଦୃଷ୍ଟ ବିଧାତା
ଭାଗ୍ୟ ତାର କି ଭବିଷ୍ୟ ଲେଖି ?
ତେବେ, ଧ୍ରୁବ ସତ୍ୟ—ନିତ୍ୟ ଐତିହ୍ୟ ଜଗତେ,
ପରମାୟୁ ରହିବ ଅକ୍ଷୁଣ୍ଣ;
ଆଜ ଯା ରହିଛି ଏତେ ପରମ ସୋହାଗେ,
କାଲିକି ତା ହୋଇଯିବ ଚୂର୍ଣ୍ଣ ।
ଚୂର୍ଣ୍ଣେ ଚୂର୍ଣ୍ଣ ମିଶି ହେବ ପୂର୍ଣ୍ଣତାର କାୟା,
ତହିଁ ପୁଣି ସ୍ରବିବ ଅମୃତ;
ସେ ଅମୃତ ହେବ ବିଷ, ବିଷୁଁ ଉପୁଜିବ
ସୁଧା, ବିଶ୍ୱନିୟନ୍ତାର କୃତ ।
କେତେ ସୂର୍ଯ୍ୟ ମଣ୍ଡଳ ବା ଗ୍ରହ ଉପଗ୍ରହ
ଧୂମକେତୁ ଏ ଜଗତେ କେତେ
କକ୍ଷଚ୍ୟୁତ ହୋଇ କାହିଁ ଚଳାଇବେ ଧନେ;
ସତ୍ତା କାର ନ ରହିବ କେବେ ।
ତା ମଧ୍ୟେ ମାନବ ସ୍ଥିର, କରୁ ଯେତେ ଗର୍ବ
ଅଭ୍ୟୁଦୟେ ଯେତେ ହେଉ ସ୍ଫୀତ,
ଦିନେ ଭଜିବ ଲୟ; ବିଶ୍ୱ ନୀତି ନିତ୍ୟ
ଆବର୍ତ୍ତନେ ହୁଏ ବିପରୀତ ।
ସବୁ ଯିବା ଯିବ, ଶକ୍ତି ରହିବ ଜୀବନ୍ତ
ବିଶ୍ୱ ପ୍ରାଣ ତହୁଁ ପଥେ ଚଳ,
ନବ ନବ ସୃଷ୍ଟି ତହୁଁ ସମ୍ଭବିବ; ସେହି
ଭବିଷ୍ୟତ, ସେ ଆସନ୍ତା କାଲ ।

# ଯୁଗଳ ଜୀବନ

୧

ବିଜନେ ରହିଛି ସରୋବର ଘାଟରେ
ପୁରାତନ ମହାକାୟ,
ଜଳବେଣୀ ବୁକେ ଦେଖେ ଢଳାବାର
ନିଜ ତନୁ ପ୍ରତିବିମ୍ବ ।
କେ ଆଣି ରୋପିଲା ମୂଳେ ତାର କାହିଁ
ମଧୁର ମାଳତୀ ଲତା;
ବଢ଼ି ଉଠିଲା ସେ କାୟେ କର ତାର,
କହିଲା ପରାଣ କଥା ।
ମାଳତୀ ଲଳିତ ଶ୍ୟାମ କିଶଳୟେ
ଆବରି କାୟ ତା ରହି,
ନବ ଫୁଟେ ଶ୍ରମେ ହସିଲା ଫୁଟର,
ସାରା ତୀର ଦେଶ ମଣ୍ଡି ।
ଲମ୍ବ ରୁକ୍ଷ ଅଙ୍ଗ ନ ଛୁଏଁ ଆତପ,
ତା କାଠ ପରାଣ ଜାଳି;
ମାଳତୀ ଲତା ସେ ପରଶି କୋମଳେ
ସନ୍ତର୍ପଣେ ଯାଏ ବୁଲି ।
ମଳୟ ସମୀର ଆସି କାୟ ଦେହେ
ଘାତ ଉପୁଜାଏ ବାଜି;
ସେ ସମୀର ପୁଣି ଖେଳାଏ ଲହରେ
ମାଳତୀ ପଲ୍ଲବ ରାଜି ।

କାଠେ ଲତା ଗଲି   ମିଶି ଅକାଶରେ,
ଝଲ୍କେ ସୁଧା ବନ୍ଧୁ ଚମ୍ପୁ;
ଅମର ପାଲଟି   ମରତେ ଗଲି ନାମ୍ବ
ସ୍ୱରଗ ସୁଷମାମନ୍ତୁ ।
ଫୁଲକେ ସେ ବନ୍ଧୁଙ୍କୁ   ମଧୁ ଆଳିଙ୍ଗନେ
ଲତା ସମ୍ମୋହନ ଭାର,
ସତେ କି ମାଳଞ୍ଚ   ସୁନ୍ଦ୍ରୁ ସମ୍ଭବେ
ଗଠିତ ଚରଣ ତାର !

୨

ସେ କେଉଁ ଦୁର୍ଲ୍ଲଭ   ମିଳନ ମରତେ,
ଅମର୍ତ୍ତ୍ୟ ସୋହାଗ ଶିଖା !
ସହଜେ ପାରନ୍ତା   ସହି କେତେ ଦିନ ?
ଗଲା ଅକସ୍ମାତେ ଛିଡ଼ି ।
ବହିଲା ବତାସ   ଫାଙ୍କି ନାମ୍ବ ତମ୍ବୁ,
ଥରିଗଲା ରାଜ୍ୟ ସାରା;
କେତେ କି ଭାଜିଲା,   ଉଡ଼ିଲା କେ କାହିଁ,
କେତେ କା ତୁଟିଲା ଭାର ।
ବତାସି ହୁଅନ୍ତେ   ଶାନ୍ତ, ଦେଖେ ନାମ୍ବ,
ମାଳଞ୍ଚ ଲୋଟଇ ଭୂମେ;
ନଧି ତା ଲୁଟିଛି,   ପାଲଟାଇ ତାକୁ
ଅଧର ସାରସ ଦ୍ରୁମେ ।
ତେର ତା ହୋଇଲା   ଜଡ଼, ନ ଯେନଲା
ମାଟିରୁ ସଞ୍ଚିତ କ୍ଷୀର;

ଡାକୁ ଡାଳ ଶିଖେ ଶୁଖି ତା ଅଙ୍ଗେ,
ଦେଖୁଁ ମହରଚଲ ସାର ।
ତେବେ, ଲୋଟି ପଡ଼ିଲ ମାଳତୀ ଲତିକା
ଭୂଇଁରେ ମେଲଇ କାୟା;
ପ୍ରତି ଗଣ୍ଠି ବାଟେ ଆସିଚଲା ରସ,
ବଦେଶି ଅଙ୍କୁର ମାୟା ।
ଭୂତଳର ଦୂବ ଶ୍ୟାମଳ ନୟନେ
ହରଷେ ଯାଚିଲ ଧନ;
ମନକଥାମାନ ଲୁହା ଲୁହ ନେହଲ,
ପ୍ରୀତି ବନ୍ଧନମଧ୍ୟେ ଲୀନ ।
କୁମାର ବୟସ ସାଥୀ ତାର ସେତେ
ଭ୍ରମିବେ ଚଉ ପାଶେ,
ଯୌବନଶିଖା ତା ଦେଖିବାକୁ ନୟନେ
ଅନାଇ ରହିଲେ ଆଶେ ।

୩

ମାଳତୀ କି ଅବା ତୃଣ ଘାସ ଦୂବା,
ଉପୋଇବ ଭୂମି ଶେଷେ ?
ସେଷ୍ଟକ ବଢ଼ିଲ, ଲମ୍ବେ ଆକାଶିଲ,
ଉଠିଲ ତାରୁଣ ତେଜେ ।
ହଜଥିବା ନଧି ଲଭି ଚନ୍ଦ୍ର ଗୁଣେ
ହରଷେ ଉତ୍ଫୁଲ ଲମ୍ବ,
ନବେଶ୍ୱରେ ସାରେ ନରେଖିଲା ପୁଣି
ନବ ଶ୍ୟାମ ପ୍ରତିବିମ୍ବ ।

ଶୁଭ ଯୋଗାଯୋଗ   ହେଲା ମାଧବୀ ସଙ୍ଗ,
  କହିଲ ମରମ କଥା;
ନୟନ ନଚାଇ   ଯୌବନ ଗରବେ
  ଗଗନେ ଟେକିଲ ମଥା ।
ପ୍ରେମ ଲତା ମନେ   ବିକଶିଲା ଫୁଲ,
  ଶୂନ୍ୟେ ଚହଟିଲା ବାସ;
ମାଳତୀ ଲତିକା   ଶ୍ରେଷ୍ଠ ସଉରଭ
  ହେଲା ଅଙ୍ଗେ ପରକାଶ ।
ଦେଖି କାମ୍ୟ ପ୍ରାଣେ   ବଢ଼ଇ ଉଛାଠ,
  ପୁଲକିତ ହୁଏ ତନୁ;
ନିଜ ଦୈନ୍ୟ ଗଲା   ପାଶୋରି ସମ୍ଭୋଗେ
  ଚିନ୍ତା ଉଭେଇଲା ମନୁ ।
ପ୍ରଭ ଡାକେ ଛନ୍ଦ   ଧରିଛି ଅଧରେ ଦେମ
  ମାଲତୀ ଲଳିତ କାୟା;
ଆଉ ବାଞ୍ଛା ନାହିଁ   ବହିବ କେତେ ତ,
  ଦିନୁ ଦିନ ବଢ଼ୁ ମାୟା ।
ଦିନୁ ଦିନ କାମ୍ୟ   ପାଳନ୍ତେ ତରୁଣୀ,
  ଦିନୁ ଦିନ ଉଠେ ହସି;
ଲତିକା ଗଳନ୍ତି   ଶ୍ରେଷ୍ଠ ଯେ ସେ ଆଜି
  ତା କୋଳେ ରହିଛି ବସି ।

୪

ସୁମନ ସୁବାସେ   ପ୍ରେମ ଆସି ପାଶେ
  ମିଳିଲା ମଧୁର ବନେ;

ନବ ମଧୁ ରସିକ ଲଭି କ ପାରିବ
ଫୁଲ ମଧୁ ରଜ ବନେ ?
ମାଳତୀ ମଧୁପେ ବଡ଼ଇ ପୀରତି,
ଉର୍ଦ୍ଧ୍ୱେ ମାଳତୀର ମୁଖ;
ମଧୁପ ଗୁଞ୍ଜନ ଶୁଣେ କାନେ ନିତି,
ଲଭେ ତା ଚୁମ୍ବନ ସୁଖ ।
ତା ନିଭୃତ ବାସ ରହେ ଅଳି ଯେବେ
ଲୁଚି ନିଶା ଅନ୍ଧକାରେ,
ତଥ ତା ଅନାଇଁ ବସଇ ମାଳତୀ
କେବେ ଶୁଏଁ ନାହିଁ ବାରେ ।
କିମ୍ବା ବଇତମ ପ୍ରାଣେ କ ମାଧୁରୀ
ମଧୁପେ ପାରିବ ମୋହି ?
ମାଳତୀ ବିହୁନେ ନିଜ ବିଭବେ ତ
ଭିଳେ ନ ପାରିବ ଶୋହି ।
ମଧୁପ ମାଳତୀ ପ୍ରୀତି ବନମଯୁ
ଦେଖି ସେ ଦହଇ ବଞ୍ଚି,
ତା ସମ୍ପଦ କ୍ଷେମ ହେଲା ମାଳତୀକୁ
ବୁକୁରେ ଧରିବା ସଞ୍ଚି ।
ମାଳତୀ ବିରହେ କିମ୍ବା କାଠ ବପୁ
ଅଚ୍ଛେଦ୍ୟ ଜଡ଼ିତ ସିନା,
ପରାଣୁ ପରାଣେ ଭୁଟିଛି ପରଶ,
ଛନ୍ଦୀ ହଜାଇଛି ବୀଣା ।
ସେହି ତ ହୋଇଲା ଅତୁଳ ଐଶ୍ୱର୍ଯ୍ୟ
କିମ୍ବା ପ୍ରାଣେ ଭୋଗିବାକୁ;

ନେଇ ବନ୍ଧବ ବୃକେ        ମାଳତୀ କୁନ୍ତଳୁ,
ମଧୁପ ଚୁମ୍ବିବ ତାକୁ ।
ଚନ୍ଦ୍ରିକା ବନେ ତ        ଶିଳା ସଇକତେ
ଝରଭୂମି ଅବଲମ୍ବି;
କେତେ କା ସହିତେ     ରଚ ପ୍ରୀତି ଡୋର,
କେତେ କା ନେଇନେବ ଦ୍ରବ ।
ହେଲେ, କେହି କାହିଁ    ରଖେ ଧର ତାକୁ ?
ସେ ଚଳେ ଅନନ୍ତ ଲକ୍ଷ୍ୟ;
କ୍ଷୀର ସ୍ରୋତ ପଡ଼େ    କ୍ଷାର ହେଉ, ତାକେ
ନିଜ ତନୁ ସିନ୍ଧୁ ବକ୍ଷେ ।

## ଉପେନ୍ଦ୍ର ଭଞ୍ଜ

ଯାଉଅଛ, ଭଞ୍ଜକବ ହେ,  ଛାଡ଼ି ଏ ମରଧାମ;
କେତେ ଶ ବରଷ ହେଲାଣି, ଘୋଷୁଛି ଉତ୍କଳ ନାମ
ରାଜ-ବଂଶେ ଥିଲ ଜନମି, ଅର୍ଜି ଯାଅ ନବର;
ବନ୍ଧ ଲକ୍ଷ୍ମୀପୂଜା ମଧ୍ୟରେ ହୋଇଥାଆନ୍ତ ବଡ ।
ଭଙ୍ଗୁର ସମ୍ପଦେ ତୁମର ଥିଲା କି ମନ୍ଦ ମତ ?
ସ୍ଥିର ଧନ ଜାଣିପାରନ୍ତା ସତେ ତବ ଶକତ ?
ସରସ୍ୱତୀ ପୂଜ୍ୟ ଅର୍ଚ୍ଚନେ ସୁଖେ କାଟିଲ ଆୟୁ,
ଲକ୍ଷ୍ମୀ ଆରାଧନେ ସେ ସୁଖ ଲଭ ଥାଆନ୍ତ କାହୁଁ ?
ପ୍ରକୃତ କୁସୁମ ଉଦ୍ୟାନୁ ଯତ୍ନେ ଆହରି ଫୁଲ,
ଦେଇ ସରସ୍ୱତୀ ପଦରେ କଲ ସେନେହେ ତୁଲ ।

ସରସ୍ୱତୀ ଭକ୍ତ ଲେଖଣୀ-ମୁନେ ଲେଖିଲା ଶବ୍ଦ,
ସେ ଶବ୍ଦ ହୋଇଛନ୍ତି ଉତ୍କଳ ଦେଶର ଅଙ୍କ ସମ୍ପଦ ।
କେତେ ଯେ ଇଚ୍ଛନ୍ତି ଧରିବେ ସେହି ଲେଖନୀ କରେ,
ଯେହ୍ନି ରଚିଯିବେ ଜଗତ-ଗାଥା ଲେଖଣୀ ତଳେ ।
ସେ ଇଚ୍ଛା କେହ୍ନେ ତ ପୂରଣ ପାରି ନାହାନ୍ତି କରି,
ଜଣେ ଜଣେ ସାରା ଉତ୍କଳେ କେବଳ ଲେଖଣୀ ଧରି ।
ଲେଖି ଯାଇଅଛନ୍ତି 'ଲାବଣ୍ୟବତୀ' କାବ୍ୟ ସରସ,
'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ବୈଦେହୀଶ ବିଳାସ' ।
ଯହିଁ ଆଜି କୋଟି ଉତ୍କଳ ମୁଖେ ନାଚନ୍ତି ସୋତେ,
କହନ୍ତି, 'ଧନ୍ୟ, ହେ ଉପେନ୍ଦ୍ର, ଏହି ମରତଦେଶେ' ।
ଯାଇଅଛି ଉପେନ୍ଦ୍ରଙ୍କ ନାମ, ଛୁଇଁ ଏ ମରଧାମ,
କେତେ ଶ ବରଷ ହେଲାଣି, ଘୋଷେ ଉତ୍କଳ ନାମ ।
ସେ ଉତ୍କଳେ କଳାବାଇଜେ, ଉପେ ରଚିଛନ୍ତି ଯେତେକ,
କାହାଲେ ତା ସ୍ୱର୍ଣ୍ଣ ଅକ୍ଷରେ ଖ୍ୟାତି ଯାଇଛି ଲେଖି ।
ଏ ଦେଶେ କି ଆଉ ଫେରିବେ ନରଜନମ ଲଭି
ହେ ଭଞ୍ଜ କୁଳଜ ତିଳକ, ଦୀପ୍ତ ଉଜଳରବି ?

## ଗାଅ ଏ ତ ନବ ବର୍ଷ

ଆଜ ପୁଣି ଏତେ ବର୍ଷେ,
ଏ ନବ ବସନ୍ତେ, ରେ ବସନ୍ତଦୂତ,
ଶତ ମୋ ଥରାଉ ହର୍ଷେ;
ଡାଳୁ କାହେ ଆଣି ବସନ୍ତ କୂଜନ,
ଭରିଦେଉ ପ୍ରାଣେ ହଜିଥିବା ଧନ,

କେତେବେଳେ ମୋତେ ଏଡ଼ିକ ବାଉଳ
ଅବେଦନ ତୋ ବାଣୀ ସ୍ପର୍ଶେ !

ତେଜ ତୋହର ଗଲି ଏତେ କାଳ ମେଳି,
କାପ୍ରହେଲି ନାନା କର୍ମେ;
ମଣିଲି ତୋ ସ୍ୱନ ମନଭୁଲ ଖାଲି,
ମନ ତୃଷ୍ଣା ମିନା, ନୁହଇ ତ ବାଟ,
ବାଜେ ଆସି କାନେ, କାନ୍ଦୁ ପାଏ ଖସି,
ବ୍ୟଥା ଉପୁଜାଇ ମର୍ମେ ।

ମୋ ଗୀତେ ଭୁଲଇ ବନ୍ଧୁ ବନେ, ଶୁଏ
ଦୂବା ଶ୍ୟାମଳତ ଖେଳେ;
କେ ଦେଖି ହସଇ, କେ କହେ ମୁଁ ବାୟା,
ସତେ ଛ ସେ ଖାଲି ଇନ୍ଦ୍ରଜାଲ ମାୟା;
ସ୍ୱର ମିନା କାନେ ପରଶେ, ମୋ ରୂପ
ଧନେ କି ଦେଖିଛି ନେତ୍ରେ ?

ଖୋଜିଲି ମୁଁ ତହୁଁ ବନିତା ଅପତ୍ୟ
ମିଛ ପଦ ମାନ ଅର୍ଥ;
କାହିଁ ଅପମାନ, କାହିଁ ବା ଲାଞ୍ଛନା
ଭୋଗିଲି ଜୀବନେ, କେତେ ପ୍ରବଞ୍ଚନା;
ଚିର ଏକ ତିକ୍ତ ନିରାଶା ସ୍ରୋତେ ମୁଁ
ଜନମ ମଣିଲି ବ୍ୟର୍ଥ ।

ଆଜି ତା ସ୍ମରଣେ କମ୍ପି ଉଠେ ହିଆ,
ରୋମାଞ୍ଚ ଘୋଟଇ ଅଙ୍ଗେ;
କି ଭ୍ରମେ ପଡ଼ିଲି, ହୁଡ଼ିଗଲା ପଥ,
ସାଧି ମୁଁ ବସିଲି ମିଥ୍ୟା ମନୋରଥ,
ଅଳୀକ ଜଗତେ ଛଦ୍ମ ଅଟ୍ଟହାସେ
ଗୃହେଁ ଆଜ ମୋତେ ବ୍ୟଙ୍ଗେ ।

ଉଚ୍ଚ ଅଭିଳାଷ ମର୍ଯ୍ୟାଦା ସମ୍ପଦ
ଲଭେ ମୁଁ ନୁହଇ ପାଶ;
ବନ ତରୁଲତା ମୋ ଜୀବନସାଥୀ,
ଅଳିଗୁଞ୍ଜ ପିକକୂଜନ ମୋ ଥାତି;
ଶାକାନ୍ନ ଭୋଜ୍ୟ ମୋ, ଭୂମିତଳ୍ପ ମୋର
ବାହୁ ଉପାଧାନ ମାତ୍ର ।

ବୁଝିଛି, ପିକ, କି ଉପାଦାନେ ଗଢ଼ା
ମୋ କ୍ଷୁଦ୍ର ପରାଣ ମର୍ତ୍ତ୍ୟ,
ମୁଁ ନୁହେଁ ପୁରୋଧା, ନୁହେଁ ତ ଶାସକ,
ନୁହଇ ମୁଁ ଜନ ସମାଜ ନାୟକ,
ଗିରିଶିଖ ଲକ୍ଷ୍ୟ ନୁହେଁ ମୋ ଜୀବନେ,
ମୋ ସ୍ଥାନ ଅତଳ ଗର୍ତ୍ତେ ।

ତୋ ଦ୍ୱାର ଭିକାରୀ ହୋଇଛି ମୁଁ ତହୁଁ,
ବନ୍ଧୁ ଏ ହୃଦୟୁ ରକ୍ତ;

ଯେତେ ତୁ ଗାଇବୁ ପାଟିବ ସାଇତି,
ହରି ନେଖ ପ୍ରାଣେ ସବୁ କୁହୁଗୀତି,
ତୃଷିତ ଏ ବକ୍ଷେ, କରବୁ, ରେ ପିକ,
ନୀରସ ଜୀବନ ସିକ୍ତ ।

ସବୁ ମିଥ୍ୟା ହେବ, ସକଳ ଅଳୀକ—
ଏ ଅଟେ ବିରାଟ ସତ୍ୟ;
ଭଙ୍ଗା ଗଢ଼ା ଖାଲି ନିତ ଅଛି ବୁଲି,
ଆଜି ଯେ ଉଠୁଛି ପଡ଼ୁଅଛି କାଲି;
ଚକ୍ର ସମ ଭାଗ୍ୟ ତଳ ଉପରକୁ
ବୁଲିବାଟି ଏକା ତଥ୍ୟ ।

ଧନ, ମାନ, ଯଶ ଅନିତ୍ୟ ସଂସାରେ,
କାଳ କବଳିତ ସର୍ବେ;
କୁବେର ଭିକାରୀ, ନୃପ ନରାଧମ
ଶ୍ମଶାନେ ଦହୁଛି ସମାନେ ଶମନ;
'ମୁଁ ଚିର ଶାଶ୍ୱତ ଅଜର ଅମର'—
କେ କହି ପାରିବ ଗର୍ବେ ?

ମାତ୍ର ଏ ତୋ ଗୀତ, ରେ ବସନ୍ତ ଦୂତ
ନ ଜାଣଇ କ୍ଷୟ ଲୁପ୍ତି;
ଧନବନ୍ତ ହୋଇପାରେ ଯେ ଏ ଅର୍ଥେ,
ଧାନ ହେଉ ପଛେ, ଧନିକ ଜଗତେ;

ଅଶାନ୍ତ ସଂସାରେ  ଶାନ୍ତି ତାର ଲକ୍ଷ୍ୟ,
ଅଳ୍ପରେ ତାହାର ତୃପ୍ତି ।

ଗାଅ ତୁ, କୋଇଲି, ଡାକୁ ଡାକେ ଜଡ଼,
ଶୁଣି ମୁଁ ଲଭିବ ହର୍ଷ;
ସମୀର-ହିଲ୍ଲୋଳେ ଭାସିବ ତା ମନ୍ଦ,
ଅମିୟ ସମ୍ପଦେ ଭରିବ ହୃଦୟ,
ମୋ ଚରଣ ତନ୍ତ୍ରୀ  ବାଜିବ, ପାଇଲେ
ତୋ କଣ୍ଠ କୂଜନ ସ୍ପର୍ଶ;
ଗାଅ, ଏ ତ ନବ ବର୍ଷ ।

## ବୁଜିଦେଲା ଆଖି

[ଏହା ଏକ ସତ୍ୟମୂଳକ ଘଟଣା । କବିଙ୍କ ଜନ୍ମସ୍ଥାନ ଶ୍ରୀନିବାସପୁର ଗ୍ରାମର ଏକ ପ୍ରାନ୍ତରେ ଗ୍ରାମ ଚଉକିଦାରର କୁଡ଼ିଆ ରହିଥିଲା । ଚଉକିଦାରର ମୃତ୍ୟୁ ପରେ, ତା ଘୁଅ ମାଲୁ ଗ୍ରାମ, ହର୍ଷୀଙ୍କୁ ଧରି ଅନ୍ୟତ୍ର ଚାଲିଗଲା । ସେତିକି ମାଆଟି ନିଜେ ପରିଶ୍ରମ କରି, ମୁଣ୍ଡ ଟେକି ଶୁଣରେ ମାରି ଚାଲିଲା । କବି ଥରେ ପ୍ରବାସରୁ ଫେରି ତା ମୃତ୍ୟୁବର୍ଣ୍ଣନା ଶୁଣିଲେ ।]

ଉଡ଼ିଯାଇଅଛି ନଡ଼ା, ବତା ନାହିଁ ଚାଳେ,
ଏ ଯେ ବଖରିଏ ଘର ଗ୍ରାମର ବାହାରେ ।
ପାଞ୍ଚ ବର୍ଷ ଅବା କାହିଁ ନାହିଁ ଲୁଣା ବାଜି,
ଅଙ୍ଗଣ ଗାହାଟ ପିଣ୍ଡା ପଡ଼ିଅଛି ଭାଜି ।

ମାଂଶ ଗନ୍ଧେ ବଦନମ ତା ଝଲେ ନଡ଼ ; ବସି,
ଭ୍ରୂକନ୍ଦ୍ର ବିଲୁଆ ଚଲ ଘର [illegible] ପଶି ।
ଜନ ପ୍ରାଣୀ କେବେ ରହି ପାରନ୍ତି ସେ ଘରେ ?
ଗାଆଁ ପିଲେ ନ ମାଡ଼ନ୍ତି ପାଖ ଲୋକ ଡରେ ।

ସେହି ଘରେ ଶୋଇଅଛି ଭୂଇଁରେ ପାତି
ସତୁରି ବରଷ ବୁଢ଼ୀ ନିର୍ଭୟେ ଏକାକି ।
ପତି ତାର ଥିଲା ଧନେ ଗାଆଁ ଚଉକିଆ,
ସେ କାଳ ବିଭବ ମନେ କେ ରଖିବ କିଆଁ ?
ଧଇବ ନ କରେ ବାନ୍ଧ, ଗଲା ତାଲୁ ଯେନି;
ନେଇଥାନ୍ତା,ନେଲାନାହିଁ ପଞ୍ଚ ପଣ୍ଡି ବେନି ।
ବଖାରୂଣ୍ଡା ଦୋଳ, ପୁଅ ରହିଛି ଅଲଗା;
ଯୁବା ନୁବଣ୍ଟଙ୍କି କାହିଁ ବାଟ ମାଆ ପୋ ?

ବାଆନ ବରଷ ଧନେ ବୁଢ଼ୀ ଗୁଡ଼ିଆଣୀ
ନିଜ ଉପାର୍ଜନେ ପେଟେ ଦିଏ ଅନ୍ନ ପାଣି ।
ଶେଷେ ଗୋଡ଼ ରହିଗଲା, ନ ପାରିଲା ଉଠି;
ଜଠରେ ପଡ଼ିଲା ନାହିଁ ନିତି ଅନ୍ନମୁଠି ।
ଧଇଲା ଗ୍ରହଣୀ ବ୍ୟାଧି, କଲା ଅସ୍ଥିସାର;
ତଳେ ବୁଢ଼ୀ ଘୁଷୁରିଲା, ନ ପୂରଇ କାଳ ।
ମଳ ମୂତ୍ରେ ସାର୍ଣ୍ଣି ସେତ୍ତ ଦେହ ଦନ୍ତୁ ଧନ,
ସେତିକ ଘଟେ ତା ଜନମ ଅଶ୍ରୁ ହେଲା କ୍ଷୀଣ ।
ଅସ୍ଥି ଚର୍ମ ଧନେ କଷ୍ଟ ନରହିଲା ଆଉ,
ନାହିଁ ଦେଖ ମୁଁ [illegible] ଯନ୍ତ୍ରଣା ଜାଉ ।

ହେନେ ରବ ବୁଡ଼, ମାଡ଼ ଆସିଲା ରଜନୀ;
ନିବଡ଼ ଅନ୍ଧାରେ ଗଲା ନିମଜ୍ଜି ଧରଣୀ ।
ଗାଆଁ ମଧ୍ୟେ ଖାଇପିଇ ଗାଆଁସାକ ଲୋକେ
ଯେ ଯା ବାସେ ନିଦ୍ରା କୋଳେ ଶୋଇଲେ ନିଧୋକେ ।
କେତେ ପେଚା ରବ ଦେଲେ, କେତେ ଶିବା ଶ୍ୱାନ;
ନିଦ ନ ଭାଙ୍ଗିଲା କାର, ନ ଶୁଣିଲା କାନ ।
କେତେ ଯମଦୂତ ଦାଣ୍ଡେ ବୁଲିଲେ ଅନ୍ଧାରେ,
ଗ୍ରାମେ ଜଣେ ନ ଦେଖିଲା ଘୋର ନିଶାକାଳେ ।
ଯୁବା ନିରେଖିଲା ନିଦେ ଯୁବତୀ ସ୍ୱପନ,
ଶିଶୁ ସେ ନିବାରିଲା ଜନନୀର ସ୍ତନ ।

ଏବେ, ହୁଏ ଛଟ ପଟ ଘୁଷିଆଣୀ ବୁଢ଼ୀ,
ଖୋଜେ ବାଟ ପ୍ରାଣବାୟୁ ଯିବାପାଇଁ ଉଡ଼ି ।
ଚକାଉଛୁ ଡାକ କାଲୁ ବ୍ୟାକୁଳେ ସେ କେତେ—
ପୁଅ ବୋହୂ ସାଥୀ ନାତି ନାତୁଣୀ ତା ଯେତେ ।
ଖରୁଁ ଖର ବହିଗଲା ନାକରୁ ନିଶ୍ୱାସ;
ହ୍ରିକା ଉଠି, ଗଲା କମ୍ପି ଅବନୀ ଆକାଶ ।
ଅଯୁତ ଯୋଜନ ଦୂରେ ଶୁଣିଥିବ ଯମ,
ଅଲୌ ଅବା ଦ୍ରବିଥିବ କଠୋର ତା ମନ ।
ଚଇଁଚି କାହିଁକି ବୁଢ଼ୀ କୋରଡ଼ିଆ ଆଖି,
ଦାନ୍ତ କଡ଼ମଡ଼ କରେ ଯମଦୂତେ ଡାକି ।
ପଡ଼େ, ଉଠେ, ପୁଣି ପଡ଼େ, ନ ପାରେ ସେ ବସି;
ଲାଗୁ କାଳ ପାଶେ ସତେ ପାରୁ ନାହିଁ ପଶି ।

ସନ୍ଧି ପାତ ବେଳର ତା ବିକଟ ମୂରତି,
ଅସ୍ଥି ଚର୍ମେ ଆବୃତ କାହିଁ କି ବିକଟ !
ଶେଷେ ଥିଲୁ ହେଲା ବୁଢ଼ୀ, ଆସିଗଲା କାଳ;
ବେନ ନେତ୍ର ବହିଗଲା ବେଢ଼ି ଅଶ୍ରୁଧାର ।
ପୁରୁଣା ଦଦରା ତାର ଡୋର ଗୋଟି ଗୋଟି
ଅଳ୍ପ ଟାଣେ ଛିଣ୍ଡାଇ ସେ ଦେଲା ତଳେ ଲୋଟି ।
ହାତ ଯୋଡ଼ିବାକୁ ସିନା ନ ପାଇଲା ବଳ,
ନମସ୍କାରେ ମର୍ତ୍ତ୍ୟ ନେଲା ମେଲାଣି ସତ୍ୱର;
ଯେ ମର୍ତ୍ତ୍ୟେ ଜୀବନନ୍ତ ଧର୍ମ ବରତ ସନ୍ତୁଷ୍ଟ,
ଜନାୟୁଧେ ଯମ ସଙ୍ଗେ ଲଢ଼ିଥିଲା ବୁଢ଼ୀ ।
ଧପଧପ ଜଳ ଘିଅ ଦୀପାଳି ଚରଣ୍ୟୁ
ଭୁଜ ଆଡ଼ା ଦେଲା ଆଖି ସେ ସ୍ୱଜନ ଗାଏଁ ।
କେତେବେଳେ ଚାହିଁଥିବ କେଜାଣି ନମ ସ୍ମୃତି,
ସତେ ପାଇଥିବେ ବାଞ୍ଛା କୃଷ୍ଣମୂ ଗିଆଁଡ ?

## ତୋଷଗାଁ ଗୌରାଙ୍ଗ ମନ୍ଦିରେ

[‘ତୋଷଗାଁ’ ଫୁଲଝରର ଗୋଟିଏ ଜନାଶୁଣା ଗ୍ରାମ । ୧୯୨୧ ମସିହାରେ ଯେଉଁ ଜନଗଣନା ହେଲା, ତାର ପ୍ରାରମ୍ଭିକ କାର୍ଯ୍ୟ ୧୯୧୯ ମସିହାରେ ଆରମ୍ଭ କରାଗଲା । ଫୁଲଝରରେ ସେତେବେଳେ ହିନ୍ଦୀଭାଷୀ କର୍ମଚାରୀମାନେ ଓଡ଼ିଆମାନଙ୍କୁ ହିନ୍ଦୀଭାଷୀ ବୋଲି ଧରି କାଗଜପତ୍ର ତିଆରି କଲେ । ସେଥିରେ ବାଧା ଦେବା ନିମନ୍ତେ ପଣ୍ଡିତ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ କବି ଫୁଲଝରରେ ଯାଇ କେତେକ ସଭା କରାଇଥିଲେ ।

ନୈମିତ୍ତିକମାନଙ୍କର ପୁରନ୍ଦରଙ୍କ ଯୋଗୁଁରେ ଅନେକ ବାଧା ପାଇଥିଲା । ଫୁଲଷ୍ଟର ଓ ତାହା ଅଞ୍ଚଳ ବୋଲି ବୋଧ ହୁଏ ଏହି ଘଟଣା ପରେ ସ୍ପଷ୍ଟ ଜଣାଗଲା । ଫୁଲଷ୍ଟରରେ ଓ ତାହା ଚାରିପାଖରେ ଏବଂ ଓଡ଼ିଶାରେ ମିଶିବା ନିମନ୍ତେ ସେମାନଙ୍କର ଆଗ୍ରହ ରହିଛି; କିନ୍ତୁ ସେ ଦିଗରେ ଆଉ ଚେଷ୍ଟା ହେବାର ଦେଖାଯାଉ ନାହିଁ । ଗଡ଼ଜାତ ପ୍ରଦେଶ ଗଠନ ନିମନ୍ତେ ବ୍ୟସ୍ତ ହୋଇଥିଲେ, ଫୁଲଷ୍ଟର ଓ ତାହା ଜାତି ତାର ସୂଚନା ପାଇପାରି ନାହିଁ ।]

ବାଜ ଉଠେ ଘଡ଼ ଘଡ଼ ଗହାନ, ବହେ ସଧା ଆଲୋକ,
ରବି ଲୁଚିଲେଣି ପାତାଳେ, ପାହି ଆସୁଛି ରାତି ।
ଉଚ୍ଚ ଗନ୍ଧ ଜନ ଘୋଟନ୍ତି ଧୂତ ଜର୍ଜ୍ଜର ମୁଖେ;
କରନ୍ତି ସାଷ୍ଟାଙ୍ଗେ ପ୍ରଣତି, ଭ୍ରମି ଚରଣ ବୁକେ ।
ଚରଣ-ଅମୃତ ପାଇଲେ, ମିଳେ ବାଞ୍ଛିତ ଘରେ;
ଖାଣ୍ଡି ଗାତ, ମୁକ୍ଷ ଶୋଇବେ ନିଶି ମନ୍ଦିର କୋଳେ ।

କଏ ଏ ଅଚିହ୍ନା ବିଦେଶୀ, ଅଛି ସଲଖେ ଉଭା,
ଚଢ଼େ କି ଭଗତ ନାହାଁନ୍ତି, ନାହିଁ ନୁଆଁ ଏ ଗବ୍ୱ ?
ଜ୍ଞାନବନ୍ତ ବୋଲି ଗର୍ବ ସେ ଲୋକେ ହେଉଛି ଗଦ୍ଧା;
ଅଜ୍ଞାନଟି ଠିକେ ମାନବ, ଚତ୍ତ୍ୱେ ଭଗତ ବନା ।
"କର ପ୍ରଣିପାତ, ଅତିଥି", ଡାକ କହନ୍ତି ଜନେ;
ତେବେ, ସେ ଅତିଥି ଶିର ତା ନୋଇଁ ନଦଏ କ୍ଷଣେ ।
ନେତ୍ରଯୁଗୁ ଝରି ଲୋତକ ଭିଜୁଯାଇଛି ବାସ,
ଘନ ଘନ ଛାଡ଼ୁ ଛଟକେ ବହେ ନାକ ନିଃଶ୍ୱାସ ।

କେତେ ବେଳେ ଅଶ୍ରୁ ଅନ୍ତରୁ ପୋଛି କହିଲ ଲୋକେ,
"ଅହୋ କି, ପ୍ରଭୁ, ଏ ଦେଉଳେ, ମିଛେ ଭୁଲାଅ ଲୋକେ ।
ଏତେ ଦିନ ଆସି ସେବନ୍ତି ପୂଜା ଅର୍ଚ୍ଚନା ବାନ୍ତି,
ଏବେ ନ ଦେଲେ ନାହିଁ ଶୁଣିଲ ହୃଦ ଗୂଢ଼ ଗୁହାରି ।
[illegible] [illegible] ଭ୍ରମ ନୟ, ମୁହିଁ ନ ପାରେ ଜାଣି;
ପଥର ହେଲେ ତ, ଏଥେ ମେ ହୋଇଯାଆନ୍ତା ପାଣି ।"
କହି ଏତେ, ଦୁଃଖେ ଅନ୍ତରୁ ପୋତି ବସିଲ ମଥା;
ନୋଇଁ ତା ନ ଦେଲ ଉତ୍ତର, ନାହିଁ ଶୁଣିଲ କଥା ।

ପଥରୁ ସତେ କି ଗୌରାଙ୍ଗ ବନ୍ଧୁ, ପାରନ୍ତ କହି,
ଦୟା ମାୟା ଯେବେ ବକନ୍ତି ଚିତ୍ତେ ନାହାନ୍ତି ବହି ?
କେତେ ମୁଣ୍ଡ ନୋଇଁ ଗୁହାରି ଲୋକେ କରନ୍ତି ନିତି
ଆଜି ଯଥାବିଧି ରହିଛି ପୂଜା ମାର୍ଜନା ରୀତି ।
କଟି ଯାଉଅଛି ଜଡ଼ ତ, ବାଣୀ ନ ଫୁଟେ ମୁଖେ;
ତାର ମନ କଥା ଅଳପେ ଯେତେ କହନ୍ତି ଦୁଃଖେ ।
ବିଦେଶୀ ଚେଷ୍ଟନେଶ ସୁନ୍ଦରୀ ମୂର୍ତ୍ତି ରଖିନ୍ତି ଘରେ;
ରହନ୍ତି ବିଦେଶୀ ଭୂଷଣେ ତନୁ ଆବରି ଜରେ ।
ଜନନୀ ବଦନ ଦେଖିବେ, ଆଉ ଅଛି କି ଆଖି ?
ଜନମଭୂମିର ମଧୁର ସ୍ନେହ ନାହାନ୍ତି ଲଖି ।

ପ୍ରୀତି-ଡୋରେ ଯେତେ ଦୁଇଅନ୍ତ ଟାଣି ସୋଦର ପାଶେ,
ସେତେ ଭଦ୍ରେ କଏ ରଖଇ ଦୂର ବିଦେଶ ବାସେ ।

ପଢ଼ି ଭାଗବତ, କୋଇଲି ଗ୍ରନ୍ଥ ଶୁଣନ୍ତ କଣ୍ଠେ,
ଦାଣ୍ଡେ ବିହରନ୍ତି ବିଦେଶୀ ଚର ଜଗତ ଚକ୍ଷେ ।
ସନ୍ତାପେ ସଢ଼ନ୍ତି ସତତ ପଡ଼ି ବିମାତା ମୋହେ,
ଲୁଚି ପଖାଳନ୍ତି ଇଶାଣେ ତପ୍ତ ଲୁହଟି କୋହେ ।
ଜଣା ପଡ଼ିଗଲେ, ମୁଣ୍ଡ କି ବେଳେକ ରହିବ ଆଉ ?
ଘର ଦ୍ୱାରେ ପର ଜୀବନ, ବଳ ଆସିବ କାହୁଁ ?

ଏତେ ଦୁଃଖ ବିଧି ଦେବାକୁ କପାଁ ହୋଇଲୁ ବାଧୀ ?
ପଶୁ ଜନ୍ତୁ ଦେଇ ବଳେର ପାଉଥାଆନ୍ତା ସାଧି ।
ବସିଛ ଦେଉଳେ, ଗୌରାଙ୍ଗ, ପୂଜା ମାଜଣେ ଲଭି,
ଏତେ ଭକ୍ତ ଦୈନ୍ୟେ ହୃଦୟୁ ଯାଉ ନାହିଁ କି ଦ୍ରବି ?
କଣିକେ କରୁଣା ଥାଆନ୍ତି ଧରି ଯେବେ ବିଗ୍ରହେ;
ଏତେ କି ସନ୍ତାନ ସନ୍ତାପ ଦେଖି ରହନ୍ତ ଥୟେ ?
ମୋହେ ଫୁଲହାର ନିବାସୀ ପଡ଼ି ନୁଆନ୍ତି ମଥା;
ତୁମେ ନୁହ ମର୍ତ୍ତ୍ୟ ଦେବତା, ଏହି ନିଧାର୍ଯ୍ୟ କଥା ।
ଦୁରଗତ ଜନ ପୀଠେ ଯେ ନାହିଁ କରେ ପ୍ରକଟ,
ପୀଠ ମହିମା ସେ ବୁଝିଛି, ଅଟେ ବିବେକ ଅନ୍ଧ ।

ମୋ ହୃଦ ଭାବନା ଅଭିଥି ଭାନ୍ତୁଥିଲ କି ମନେ ?
ବସିଥାଇ ଚାହୁଁଥିଲଟି ଅଶ୍ରୁ ବେନି ନୟନେ ।
ପୋଛି ଦୂର କରେ ସେ ଅଶ୍ରୁ, ଫିଙ୍ଗି ସନ୍ତାପ ମୋହ,
ବଚନେ ବୋଧିଲ ପରାଣ ତାପ ସିଞ୍ଚିତ କୋହ ।

କହିଲ, "ଗୌରଙ୍ଗ, ସତେ ହେ ଯେବେ ଭକ୍ତ ସୁଧାର
ପଖାଳିବ ମଞ୍ଜେ, ଏ ଗୁରୁ ଶୋକଜାଳା ନବାର,
ସନ୍ମାନେ ରଖିବ ଦେଖାଇ ମାତୃଶୋଭନ ମୁଖ,
ଲାଳ ଖୁଦେ ଆଣି ନିହ୍ବବ ଭାଇ ଗହ୍ୱଣ-ସୁଖ,
ତେବେ ଆସି ପଦେ ନମିବ, ସ୍ତୁତି ବଦନେ ଗାଇ;
ପଥିରୁ ଅଧିକ ଭୁକ୍ତିଦ୍ଧ ଭକ୍ତ ନାହିଁ ଗୋସାଇଁ ।"

## ଚନ୍ଦ୍ରଶେଖର

ଉତ୍କଳ ଗୌରବ ରଙ୍କ ହେ ଚନ୍ଦ୍ରଶେଖର,
ନଗଣ୍ୟ ମୁଁ ବନ୍ଦୁଛି ପୟରେ;
ଏ ଭବ ମୃତ୍ତିକା ଘନ୍ତୁ ଅଟେସର, ଆଜ
ରାଜ କୋଠି କନକ ଅନ୍ତରେ ।
ପୁର ପଲ୍ଲୀ ବିଲ ବନ ଜଳଧି ପ୍ରାନ୍ତର
ଅଛି କବା ଏ ଦେଶେ ଏପରି,
ଜୀବନ ଦୁର୍ଲ୍ଲଭ ଶିକ୍ଷା ନିସର୍ଗ ବଯାରେ,
ଯହିଁ ତୁମ୍ଭ ରହି ନାହିଁ ଭରି ।
ଜୀବନ୍ତେ ଯାମିନୀ ସାରା ଉଳ ଅନ୍ତରିକ୍ଷେ
ତୋଳି ନେଇ ରହୁଥିଲ ଦୃଷ୍ଟି,
ବନ୍ଧୁ ତାରା ଗ୍ରହପୁଞ୍ଜ ମେଲାପ ମୟୂଖେ
ନର ଆତ୍ମା ଅମରେ ମିଶାଇ ।

ଗଗନ ଅଙ୍ଗନ ମଧ୍ୟ ବିହରି [illegible],
  ସୁରଲୋକେ [illegible] ଥିଲା [illegible];
ସ୍ୱରଗ ଅମୀୟୁ ତେଜ ଉଗାଳି ପବନ,
  ମୋହୁଥିଲ ନିଦବ ମୋହନେ ।
ତେବେ ହେଲେ, କ୍ଷିତି ତଳ ନଙ୍ଗୁର ସମର୍ଗ
  ଦନେ ନାହିଁ ତେଜିଅଛ ଭୁଚ୍ଛ;
ମାଟି ଧୂଳି ଶେଯେ ନର ଉଦାସ ବେଶରେ
  ନୋଇଁ ଶିର ଲୋଟିଛ ତ ଲକ୍ଷି ।
ଦରିଦ୍ର କୁଟୀରବାସୀ ଦଇନେ ନୟନୁ
  ଢାଳିଅଛ ସେନେହ ସକଳେ;
ପରାଣ ଅଭିନ୍ନ ପ୍ରିୟ ବିଚ୍ଛେଦେ ଜାଳିଛ
  ମୃଦୁ ଶୋକେ ଥରାଇ ଅଧର ।
ରାଜଧର୍ମେ ଜନ୍ମ ତବ, କେ ଜାଣଇ ଆଜି ?
  ଫିଙ୍ଗି ପାଦେ ଦେଇଛ ସେ ଶିରୀ;
ବନ ଗିରି ପଦାଁ ମାଡ଼ି ଗୃକାନ୍ତ ଚରଣେ,
  ପଲ୍ଲୀପଥ ଉଦାସ ଭିକାରୀ !
ଜ୍ୟୋତିଷ ଗଣନା ଭୁଲ ପାର୍ଥିବ ସମ୍ପଦେ
  ମହତ୍ତ୍ୱ କି ମାପିବ କେ ତବ ?
ହୃଦୟ ବିସାର ଯିବା ବତ୍ସରେକୁ ନାୟ,
  ଉହିଁ ଏକା ଭୁଲିବ ବାନ୍ଧବ ।
ସେ ହୃଦୟ ମହନୀୟ ପୁଣ୍ୟ ବିସ୍ତାରରେ
  ବୁଡ଼ାଇଛ ଏ ସାରା ସଂସାର;
ଉତ୍କଳ ସନ୍ତାନ୍ତି ଭୂମେ ରୋଧି ତଳ ମାରିବ
  ତବ ବତ୍ସ ମହାୟୁ ସମ୍ଭାର ?

# ପିକ

କେବେ ତ ଗାଉଛୁ, ପିକ, ଲୁଚିତ ହୋ ନନ୍ଦନେ,
କେତେ ତାନ ଖେଳାଉଛୁ ନିମେଷେ ନିମେଷେ ।
ଅକଳନ୍ତ ପଥେ ଚଳି, ତୋ ଗୀତି-ମାଧୁରୀ
ମୋ ଶୂନ୍ୟ ଅନ୍ତରେ କ୍ଷଣେ ଯାଉଅଛି ପୂରି ।
ପାହାନ୍ତିରୁ ଉଠି, ରବି ଉଇଁବାର ବେଳେ,
ମୋହନ ମୂରତି ଦେଖେ ତରୁଲତା ମେଳେ;
ପଲ୍ଲବ ଶ୍ୟାମଳ ଅଙ୍ଗେ ପାଟଳ ବସନ,
ମିଶା ମିଶି ବେଶ, ଆହା କେଡ଼େ ଶୋଭାବନ !
ସୁଦୂର ସାଗରୁ ଆସି, ଅଶାନ୍ତ ସମୀର
ପତ୍ର ମୂଳେ ଖେଳିଯାଏ ସେନେହେ ରୁଚିର ।
ସେତେବେଳେ ସରଗର ପୀୟୂଷ ସମାନ
ଶୁଣଇଁ, ପିକ, ମୁଁ ଯେବେ ତୋ ମୁରଲୀ ତାନ,
କୋଟି ନିଧି ମୋ ଚରଣେ ଗଡ଼ଇ ଉଚ୍ଛୁଳି,
ମୋ ନିଜ ସ୍ୱାନତା କ୍ଷଣେ ଯାଏ ମୁଁ ପାସୋରି ।
ତାଳୁ ତାଳେ ସମୋହନେ ଉଡ଼ି ତୋ ସହିତେ
ମୁଁ ଅବା କୋଇଲିଟିଏ, ବଣ୍ଟୁରଇ ଚିତ୍ତ ।

ଏତେ ମଧୁ ଦାନେ ମୋହି ରଖିଛୁ ସଂସାର,
ତୋ ବିନେ ନ ହୁଅନ୍ତା ସେ କେଡ଼େ ନାରଖାର !
ତୁହି ଯେବେ ବେଳେ ବେଳେ ନ ଆସନ୍ତୁ ପିକ,
ଟାଳଟନ୍ତା ଦୁଇ ଦିନେ ଏ ମର୍ତ୍ତ୍ୟ ଅଳୀକ ।

ତରୁଲତା ବଦନେ କି ନୂଆ ଯଉବନ
ଥରୁ ଥରେ ଫେର ପୁଣି ଆସନ୍ତା ଏମନ ?
ଗୋଟିଏ କୁସୁମ ଯେବେ ବିଷାଦେ ମଉଳି
ଗନ୍ଧଢାଳି ନିଜେ ତଳେ ପଡ଼ନ୍ତା ଧୂଳି,
ଅପର କଳି କି ପୁଣି ବିକଶନ୍ତା ତହିଁ,
ତୋ ଗୀତ ସମ୍ପଦ ଯେବେ ନ ଥାନ୍ତା ରେ ରହି ?
ତୋ ଭଳି ଅମୂଲ୍ୟ ନିଧି ଏ ଜଗତୁ କ୍ଷଣେ
ଗଲେ ଅପସରି, ସୃଷ୍ଟି ରହିବ କେମନେ ?

ଏ ମରତେ ଆସି, ପିକ, ବହୁଗ ନିମନ୍ତେ,
ଫେରି ଯେବେ ଯାଉ ନିଜ ସରଗ ସ୍ୱଦେଶେ,
ସକଳ ସମ୍ପଦ କାହିଁ ଯାଏ ରେ ଉଭାଇ,
ନନ୍ଦନ କାନନ ଦେଉ ମରୁ ପାଲଟାଇ ।
ମେଘ ଗରଜନେ ମିଶି, ବରଷା ପବନ
କରଇ ରାଜୁତି ଆସି, ପ୍ରଳୟ ଯେସନ;
ହିମର ଭୀଷଣ ସ୍ରୋତ ଆସଇ ଉଛୁଳି ।
ତରୁ ଲତା ଜୀବ ପ୍ରାଣୀ ପଡ଼ନ୍ତି ମଉଳି ।
ପୁଣି ଯେବେ ଆସୁ ଫେରି, ରେ ସରଗ ଦୂତ,
ସବୁ ନିଧି ସଙ୍ଗେ ଆଣୁ ସ୍ୱରଗ ଅମୃତ ।
ହାଏ, ପିକ, ଯାଉଥାଉ ଯହିଁ, ଇଚ୍ଛା ଉଡ଼ି;
ବେଳେ ବେଳେ ମାତ୍ର ଆସୁଥିବୁ ରେ ବାହୁଡ଼ି ।

କହ ରେ, ବସନ୍ତ ଦୂତ, କହ ତୁ ବୁଝାଇ—
ତୋ ପରି ଏ ବିଶ୍ୱେ ଆଉ ଅଛି କି କେ ନାହିଁ ?

ମୋ ମନର କୋଇଲିଟି ଗାଉଛି ସେ ଗୀତ,
କେତେ ମନ କେତେ ଫୁଲ ହେଉଛି ମଉଳି ।
ବସି ମୁଁ ଅନାଇଁ, ପଥ ଚାହିଁ ନିରନ୍ତର—
ଆସି ଦେଇଯିବ ଦେଖା ନିମିଷ ମାତର ।
କହରେ କୋଇଲି, ତୁ ତ ସେହି ରାଜ୍ୟବାସୀ,
କେବେ ସେ ମୋ ହୃଦକୁଞ୍ଜେ ବସିବ ଆସି ?
ଏ ଜୀବନ ହୁଅନ୍ତାଣି ବିଷମ ଶ୍ମଶାନ;
ତୋର ଏ ସୌରଭ ଦେଖି ରଖିଛି ପରାଣ ।
ଯାଅ, ପିକ, ଯାଉଥାଅ ଯହିଁ ଇଚ୍ଛା ଉଡ଼,
କେବେ କେବେ ସେବେ ତୁହି ଆସିବୁ ବାହୁଡ଼ ।

## ଯାମସେଦ ପୁରେ

[ ବର୍ତ୍ତମାନ ଜାମସେଦପୁର ଲୁହାକାରଖାନା ଯେଉଁଠାରେ ବସିଛି, ପ୍ରାୟ ପଚାଶ ବର୍ଷ ପୂର୍ବେ ସେଠାରେ କାଳିମାଟି, ସାକଚି ପ୍ରଭୃତି ନାମରେ କେତେଗୁଡ଼ିଏ ପଲ୍ଲୀଗ୍ରାମ ଥିଲା । ଓଡ଼ିଆ ଓ ଆଦିବାସୀ କୃଷକମାନେ ସେସବୁ ଗ୍ରାମରେ ବାସ କରୁଥିଲେ । ଟାଟା କମ୍ପାନି ସେମାନଙ୍କୁ ସେଠାରୁ ବାସଚ୍ୟୁତ କରି ସେମାନଙ୍କ ପୈତୃକ ଭୂସମ୍ପତ୍ତି ଦଖଲ କରିନେଲେ । ପ୍ରସିଦ୍ଧ ଶିଳ୍ପପତି ଜାମସେଦଜୀ ଟାଟାଙ୍କ ନାମ ଅନୁସାରେ ବର୍ତ୍ତମାନ ସହରର ନାମ ଜାମସେଦପୁର ହୋଇଛି । ]

ଏହି ଯେ ନଗରୀ ଆଜି ମୁଁ ଦେଖେ ନୟନେ ଚାହିଁ,
ଧନ ଦଉଲତେ ତଉଲ ମିଳି ଏହାର କାହିଁ ?
ପ୍ରାସାଦ ସଉଧ ଗଗନେ ଶିର ଉଠିଛି ଟେକି,
ମନକୁ ରଖିବ ଟାଣିକ ବାନ୍ଧି ମରମେ ନେକି ।

ଦୃଷ୍ଟ ସଉଭାଗ୍ୟେ ନିରତେ ଭ୍ରମି ରହନ୍ତି ଜନେ,
ମର ଦୁଃଖ ଶୋକ ନାହାନ୍ତି ସତେ ଦେଖି ନୟନେ ।
କଳେ ନିତି ଧନ ସମ୍ପଦ ଶିକ୍ଷା ଗଢ଼ନ୍ତି କରେ,
ଲୁହାରେ କରନ୍ତି ସୁନା ସେ କର ପରଶେ ଝରେ ।
କି ଅଛି ଅପୂର୍ବ ମର୍ତ୍ତ୍ୟେ ଯା ଧରି ନାହାନ୍ତି ବସି ?
ନୋହନ୍ତି ସତେ ଭୁଞ୍ଜିବେ ସ୍ୱର୍ଗ ସମ୍ପଦ ହସି ।
ଏଣୁ ଯେ ସମ୍ଭାର ନୟନେ ଧନେ ଦେଖିବା ପାଇଁ
ନିଖିଳ ଭୁବନୁ ସବାରେ ଜନେ ଆସନ୍ତି ଧାଇଁ ।
ମାଡ଼ି ସେ ଯାଆନ୍ତି ଚରଣେ ଶିଳା ସରଣୀ ପରେ,
ଅଜାଣିତେ କେତେ ଦରିଦ୍ର ଆଶା ବିଲୁପ୍ତ ଭାଳେ ।
କଳ ଘନ ମନ୍ଦ୍ର ଗର୍ଜନେ କର୍ଣ୍ଣେ ଶୁଭନ୍ତି ମିଶା
ଦୁଃଖିହୃଦ ବୃଥା ଗୁପତ ଧୀର ନୀରବ ଭାଷା ।
କେତେ ଆହା ପଲ୍ଲୀ କୃଷକେ ଚିତ୍ତ ଉଲ୍ଲାସ ଛାନେ,
ହଳ ବାହି ଏହି ପ୍ରାନ୍ତର ଭରି ନ ଥିବେ ଦନେ ।
କେତେ ତ କୃଷକ ଘରଣୀ ଭେକେ ଗିରସ୍ତ ଲାଗି
ଭାତ ଘେନି ବଟେ ଥିବ ଟି ଆସି ସରମେ ଭାଗି ।
ପ୍ରାଣପତି ପେଟ ବଳଲେ, ଲତା ଉଡ଼ାଳେ ବସି,
ନିଜ ପେଟ ଅଳ୍ପେ ମଉନେ ଭରିଥିବଟି ହସି ।
ଫେରନ୍ତେ କୁଟୀରେ ଚରଣ ଲାଗିଥିବ ତା ଦ୍ୱାର,
ଗିରସ୍ତ ସଙ୍ଗତେ ନ ଥିଲେ, କିବା କୁଟୀର ଶିରୀ ?

ସେହି ଶିରୀମାନ ଭାଙ୍ଗି ତ ଗଢ଼ା ଏ ପୁରୀ ଆଜ,
ସେହି ପଲ୍ଲୀ ସୁଖ ଶରଧା ଏଥି ରହିଛି ଭାଜି ।

ଖୋଳିଲେ ମୃତ୍ତିକା ପାଇବ ହଳ ଲଙ୍ଗଳ ଗାର;
ଦୁର୍ଭିକ୍ଷରେ ଦେଖିପାରିବ ଧନ ପେଷଣ ଭାର ।
ତନ୍ତୁ ଲତା ମୂଳ ନିକାରଣ ଆଜି ନ ଥିବ ଖୁଣ୍ଟି,
ଦିନେ ଯହିଁ କାଟି ଫସଲ ଚଷା ଥିବଟି ରଖି ।
କେଦାର କନକ ସମ୍ଭାରେ ଲଦିଥିବ ତା ମନ,
ତୋଷେ ବରଷନ୍ତି ଖାଇ, ସେ ଯାପିଚାଲିବ ଦିନ ।
ଆଜି ଏବେ ଯାଇ କେବଣ ଦୂର ଦୁର୍ଗମ ପଥେ,
ଧରି ମୁକ୍ତି ଆଶା ପୁଣ କାନ୍ଦୁ ଚି ଥିବ ଅଶ୍ରୁନ୍ୟ ନେତ୍ରେ ।
ସ୍ମରୁଥିବ ତା ଅତୀତ ଭବ ସମ୍ପଦ କଥା,
ଶମନ ଜୀବନ୍ତ ପୀଡ଼ନେ ନୋଇଁ ପଡ଼ିନେ ମଥା ।
ନିଦାରୁଣ ଏହି ଛବି କେ ଯେବେ ଦେଖିବ ଲୋଡ଼ି,
ଏ କୁବେର ପୁରେ କପାଇଁ ବାରେ ଆସିବ ବରି ?
ବୁଝିବାର ଯାଇ ଆସେ ତ ମରୁ ପଦା କାନନେ,
ଅନଶନେ ଯହିଁ ଉଦର ଜାଳି ଭ୍ରମନ୍ତି ଜନେ ।
ରହ ହେ ନଗରନିବାସୀ, ଅର୍ଦ୍ଧ ନୃପତିରାଜ,
ନ ଫେରିବ ଦିନେ ଏ ପୁରେ, ତେଜି ଯାଉଛି ଆଜି ।

## ମଧୁସୂଦନ

ଉତ୍କଳ ବରେଣ୍ୟ ସୂନୁ ହେ ମଧୁସୂଦନ,
ତୁମ୍ଭ ଲଗି ଏକା ଆଜି ଏ ଉତ୍କଳ ଧନ୍ୟ ।
ଦେଶ ବିଦେଶେ ତ ତାଙ୍କୁ ଚିହ୍ନାଇଲ ଲୋକେ,
ତା କୀରତି ଘୋଷାଇଲ ପର ଜନ ମୁଖେ ।

ଜଗତ ଅନନ୍ତ-ସ୍ରୋତେ ଚଳାଇଲ ନେଇ
ପୁଣ୍ୟ କରପୁଟେ, ନିଜେ କର୍ଣ୍ଣଧାର ହୋଇ ।
ଅଗାତ ଅକ୍ଷୟ ଶିଖା ଅଗାଢ ଗରବେ,
ଲୁଚ ଯିନା ରହୁଥାନ୍ତା ଜନମର ଦବେ ।
କ ନବ ଜୀବନ ବାରି ସିଞ୍ଚ ଅବହେଳେ,
ନବ ଜୀବ ଦାନ ଆଜ କରିଛ ଉତ୍କଳେ ।
ସପନ ଦୁର୍ଲ୍ଲଭ ଏହୁ ନବ ଜାଗରଣେ
ବିରାଜୁଛ, ଦେବ, ପୁଣ୍ୟ କନକ ଆସନେ ।

ବସି ରାଜ ଦରବାରେ, ହେ ବର ସନ୍ତାନ,
ଅର୍ଜଛ ଜନମର ବହୁ ସନମାନ ।
ଶାସକ ଦୁଆରେ ପ୍ରଜା ଭାବ ଅଳ ଯେତେ,
ଶିଖାଇଛ ଉତ୍କଳକୁ ମରମ ସଙ୍କେତେ ।
ଘରେ ଘରେ ଉତ୍କଳର ଇଷ୍ଟ ଦେବ ପରି
ତୁମ୍ଭ ନାମ ଘୋଷୁଛନ୍ତି କୋଟି ନର ନାରୀ ।
ବାଳ ବୃଦ୍ଧ ଯୁବା ବାଳା ବନିତା ବଦନେ
କାହିଁ ନାହିଁ ତୁମ୍ଭ କଥା ହୃତ ଆରାଧନେ ?
ସାଗର ଜଙ୍ଗଲ ଗ୍ରାମ ବନ ନଦୀ କୂଳେ
ପଡ଼ିତ ଚରଣ ଯାଏ ଖେଳ କାହା ଗୀରେ ?
ଜନ୍ମଭୂମି ଲାଗି ଯେତେ କଠୋର ସାଧନା,
ଯେତେ ତବ ଚିତ୍ତର ଜ୍ଵଳନ୍ତ ବେଦନା ।

ଧନେ, ଦେବ, ରୋଗଶୋକେ ଖୋଇ ନିଯାତନେ
କହୁଥିଲ ପଦେ କଥା ମୁକ୍ତ ଆଳାପନେ ।

ନୟନ ସୀମନ୍ତେ କ୍ଷଣେ ମୁକ୍ତା ବିନ୍ଦୁ ଢାଳି,
ବହିଗଲା ଦୁଇ ନୟନୁ ଦୁଇ ବିନ୍ଦୁ ବାରି ।
ନିମେଷେ ନୟନ ଗଲା ମୁଦି ହୋଇ ମୋର,
କି ବିରାଟ ବ୍ୟକ୍ତି ତୁମେ ଚିହ୍ନିଲି ନିକର ।
କେତେ ମନ୍ତ୍ର କେତେ ଦାନ ଏହି ଦେଶୟ
ଦେଇଛ ଉତ୍କଳେ, ଅହେ ତା ଆଦି ତନୟ ।
କେବେ କି ପ୍ରତିଭା ତବ ପାରିବୁ ବିସୋରି,
ତୁମରି ଆଦର୍ଶେ, ଦେବ, ଏ ଜୀବନ ଗଢ଼ି ?

ଥାଅ, ଦେବ, ବଞ୍ଚିଥାଅ, ହେ ମଧୁସୂଦନ,
ଘୋଷୁଥାଉ ଉତ୍କଳ ଏ 'ମଧୁବାବୁ' ନାମ ।
କୋଟି ଜନ ହୃଦୁଁ ହୃଦେ, ହେ ଉତ୍କଳ ପିତା,
ଢାଳି ଯାଅ ଦେଶରେ ନିଗୂଢ଼ ବାରତା ।
ଗଢ଼ି ଯାଅ ଜଣୁ ଜଣେ କରି ତୁମ୍ଭ ଭଳି
ଯେତେ ଏ ଉତ୍କଳ ଦେଶେ ଆଜ ନର ନାରୀ ।

ଯେହ୍ନମାନେ ତୁମର ହେ ସେନେହ ତନୟ,
ନାନା ଦାନେ ଦେବେ ପଦେ ଦୁର୍ଲଭ ହୃଦୟ ।
ତୁମ୍ଭ ଜ୍ଞାନେ ରଖିଯାଅ ଶତ ଶତ ଶିଷ୍ୟ,
ତୁମ୍ଭ ହାତେ ଗଢ଼ା ହେଉ ଏ ଭୂମି ଭବିଷ୍ୟ ।
ତେଜ ସବ, ଥରେ ଯେବେ ଉତ୍ସର୍ଗିଛ ଦେଶ;
ଅତୃପ୍ତ ନୈବେଦ୍ୟ ମାତା ନ ଲଭନ୍ତୁ ତୋଷ ।
ଉତ୍କଳ ବରେଣ୍ୟ ସୂନୁ, ହେ ମଧୁସୂଦନ,
ତୁମ୍ଭ ଲାଗି ହେଉ ଭବେ ଏ ଉତ୍କଳ ଧନ୍ୟ ।

# ସୋହାଗ ଗୀତିକା

ବିପଣି ଉପାନ୍ତେ ଜୀର୍ଣ୍ଣ କୁଟୀରଂ ଏକାଟି
ଅଧେ ଭଙ୍ଗି ଅଧେ ଅଛି ଉଭା,
ଘାସ ଲତା ଚଉପାଶେ ବଢ଼ି ଅଯତନେ
ଆବରନ୍ତି ନିଦାରୁଣ ଶୋଭା ।
ଦୁଆରେ ତପନତାପେ ବସି, ଭିକାରୀଟି
ଗେଉଛି ତା ସୋହାଗ ଗୀତିକା,
ଗୃହ ପଦା ଧରା ବ୍ୟୋମ ସେ ତାନ ଲହରେ
ଥରି ଉଠେ ଏକ ଲୟେ ଏକା ।
ଶୁଣି ମୋ ଶ୍ରବଣେ କ୍ଷଣେ ସେ ଧାର ଲଳିତ
ମଧୁ କଣ୍ଠେ ଭରିଲା ବିଳାପେ,
ବାୟୁ ସନେ ଜନ ରୋଳେ ମିଳି ନିଧୁବନେ,
ମୃଦୁ ନିଦ୍ରା ସ୍ୱପନ ପରଶେ ।
ଦେଖିଲି କୁଟୀରୁ ଆସି କୃଷକ ରମଣୀ,
ତାଙ୍କ ମୁଖ ସଲଜ୍ଜ ପଣତେ,
ଗୃହିଳ ମୁଠିଟି ତାର ସରମ ସଂକୋଚେ
ଭିକ୍ଷାପାତ୍ରେ ଢାଳି ଦେଲା ହାତେ ।
ଉଠି, ଗୀତ ତାନ ଛେଡ଼ି, ଚଳିଲା ଭିକାରୀ,
ବଦନେ କି ପୁଲକ ସମ୍ଭାର !
ଦେଖି ବିସ୍ମରିଲି ଚିତ୍ତେ, ଏ ଯେ ପ୍ରତିଦାନ
ନିସର୍ଗ ଏ ଦାନ ପାଉଣା ଭାର ।

ନେଲିଡ଼ି ତହିଁ ତାରେ ମୋର ଶିକା ଗନ୍ଧଶାଳେ
ବସାଇଲି ଦୁର୍ଲ୍ଲଭ ଆସନେ;
କହିଲି, "ଭିକାରୀ, ଗାଇ ଶୁଣାଅ ରେ ପଦେ,
ବାହୁଡ଼ିବୁ ତୃଷିତ ଚରଣେ ।"
ଶୁଣି, ସେ ଭିକାରୀ ତୋଳି ଧଇଲା ମୁରଲୀ,
କେତେ ରଙ୍ଗେ ବାଇଲା ଆଦରେ;
ସୁଖ ଦୁଃଖ ଗାଥା କେତେ, ଖାରଭୁ କାହାଣୀ,
ମନମଥ ପ୍ରମୋଦ ଭୂତଳେ ।
ଗାଇ ସାରି ଯିବା ପାଇଁ ହୁଅନ୍ତେ ସଜ ସେ,
ଦେଲି ହାତେ ରଜତ ମୁଦ୍ରିକା;
କହିଥିଲା, "ଆଉ ଥରେ ଆସି ଗାଇଯିବୁ",
ଆଉ ଦିନେ ନ ଦେଲା ସେ ଦେଖା ।
କେତେ ଦିନ ସେହି ଦିନୁ ଗଲଣି ମୋ ବନ୍ଧୁ
ବୃନ୍ଦେ ଏହି ପାଷାଣ ମନ୍ଦିରେ;
କି ସେ ବଂଶୀ ଗାଇଥିଲା ଭିକାରୀଟି ଏଥି,
ମନେ ଏବେ ନ ପଡ଼ଇ ତିଳେ ।

ତୃଷିତ ଅନ୍ତରେ ଲୋଡ଼େ, ସେ ଗୀତ-ମାଧୁରୀ
ପୁଣି ଥରେ ଯେବେ ଶ୍ରବଣେ;
ପରିଜନ ପେଷି ତାକୁ ଯେତେ ମୁଁ ଲୋଡ଼ଇ
ନ ଆସେ ସେ, କି ଦମ୍ଭରେ ମନେ ।
ଦିନେ ବାଟେ ଯାଉଁ ଏକା ଦେଖିଲି ଚକିତେ
ସେହିଭଳି ଗାଉଛି ଭିକାରୀ;

ଗୀତ ଟା ଜରନ୍ତେ ଆଣି ଦୃଢ଼ଳ ମୁଠିଏ
ସେ କୁଟୀରୁ ଟାଳିଦେଲା ନାଁଓ ।
"ଦୁଃଖ ବଡ଼ କରିଥାନ୍ତୁ, ଆମିତ କାଳିକ",
ଚାଲିବେଲେ ଭାଷିଲା ସେ ମୁଖେ;
ହଦାରେ ନୂପୁର ଧ୍ୱନି ଅଚିରେ କୁଟୀରେ
ମୋ ସମ୍ମୁଖେ ଦୃଶିଗଲା ସୁଖେ ।

## ନିରନ୍ଧ୍ର

ପଲ୍ଲୀ ଉପବନ ଲତିକା ନିକୁଞ୍ଜେ
ସୁମନ କନକ ବାସେ
ଦ୍ୱାଦଶ ଯାମିନୀ ନବୀନ ବାଳିକା
ବଦନ ପୁଲକ ହାସେ !
ଶାଳଆ ଶମଳ କଳ ଗୀତ ତାନ
ହୃଗଳ ଶ୍ରବଣେ ମାନ୍ଦି,
ଅନାଏ ଉଷଟେ ଘଣ୍ଟିକା ଧ୍ୱନିଲେ
କେବେ ଶୈଳ ତୋହା ପିଇ ।
ଉଷା ସ୍ୱର୍ଣ୍ଣକରେ ଉପବନ ପଥେ
ଉଦାସ ବିହାର ବେଳେ,
ସୁମନ କଳିକ ସଙ୍ଗେ ସେ ବାଳିକା
ସୁମନ ସୋହାଗ ମେଳେ ?

ସେହି ବାଟେ ନିତ ଧୂଳି ଉପଟନେ
ଯାଏ କେ ବାଳକ ସୁଖେ,

ନିରେଖି ନିରତେ ନବ ଯଉବନ
ପୀରତି ଗୀତିକା ମୁଖେ;
ଘାଟଶିଳା ଶ୍ୟାମ ଶିଖରେ ବହନ
ହେରଇ ନିସର୍ଗ ଶୋଭା,
ମାଳିଆ ତରଳ ରଜତେ ଉଦ୍ଭାର
ଢାଳେ ତା ସୁଠାମ କାୟ ।
କେତେ ଠାବେ କାହିଁ ବାଳକ ବାଳିକା
ଉଦାସ ବହାରେ ଯାଇ,
ବସନ୍ତ ବୁଲନ୍ତି; ଭୁମେ ତ ନ ପଡ଼େ
କାହା ଦେହେ କାହା ଛୁଇଁ ।

କେତେ ଧନେ ସୁବା ଲକ୍ଷ୍ମୀ ସରସ୍ୱତୀ
ସୁଗଳ କରୁଣା ଲଭେ
ଅର୍ଦ୍ଧ ଘାଜଟିଶ ସମ୍ଭୋଗେ ଉଜ୍ଜ୍ୱଳ,
ଭୁଜିଛନ୍ତି ଆନ ଭବେ ।
ଦେଖିଲି ଝପଟୀ ଜନତା ଉତ୍ତାଳେ
ଠିଆଛି ହୋଇଛି ବାଳା;
ନିରନ୍ନ ବଦନ ଶୁଖି, ଅନ୍ତରଳ
ପ୍ରକଟେ ଜଠର-ଜ୍ୱାଳା ।
ଶ୍ରବଣେ ଭରିଛି କ୍ଷୁଧିତ ସ୍ୱଜନ-
ନିରାଶ ମୁମୂର୍ଷୁ ଗୀର,
ନୟନେ ତୋଳିଛି ବ୍ୟାଧି କବଳିତ
ଶତ ଭଗ୍ନ ସ୍ତୂପ ଶିର ।

ଶୁଣିଲେ ଯୁବକ,        କହୁଛନ୍ତି ମୃଦୁସ୍ୱନେ
"ହାତେ ମୋ ନାହିଁତ ଧନ;
ବାଳ ଖୁଟି ନାହିଁ,    ଆଜ କାଲି ନେଇ
ରଖିବ କିମ୍ପା ଜୀବନ ?"

ଚକିତ ଜନତା        ଯାଏ ଅପେଷି
ସରଣୀ ଯୁଗଳ ପାର୍ଶ୍ୱେ,
ନୃପତି ସମ୍ଭାରେ        ଆସୁଛନ୍ତି ଯୁବା
ସେ ଘନ ବପଣି ବାସେ ।
ହାତେ ହାତ ଧରି        ଦୁଃଖିନୀ ବାଳାର
ଚାଲିଲେ ଯୁବକ ପଥେ;
ପଲ୍ଲୀ ଜନେ ହେଲେ କୁହାକୁହି, "କେବେ
ହୋଇ ଏ କି ପାରେ ସତେ ?"

## ଯାତ୍ରୀ

ଦୂର ଦେଶ ଆଗତ ହେ ପୁଣ୍ୟ ତୀର୍ଥ ଯାତ୍ରୀ,
କାହା ଲାଗି ଏ ଦୁଃଖ କଡଣ ?
ସ୍ୱଦେଶ ସମ୍ଭୋଗ ତେଜି, ଏ ମହା ବନସ୍ତେ
ଟାଳି ଯାହା ଦେଇଛ ଜୀବନ ।
ନିଶୀଥ ସପନେ ଭଳି ଏ ଦୀର୍ଘ ଯାମିନୀ
ମୁହିଁ ମୋର ଯାପି ନିକେତନେ,
ସୋଦର ସୁହୃଦ ସଖା ଶିଶୁ ସମ୍ପଦର
ଭୁଲିଲିତ ମୋହନ ବେଢ଼ଣେ,

ଜ୍ଜ.ବ ତ ନ ଥିଲା ହୃଦେ ମରଣୀ ସୀମନ୍ତେ
ଏକାକୀ ଟି ବସି ତରୁ ତଳେ
ଏ ମର୍ତ୍ତ ରଜନୀ କଏ ଶିଶିର ମରୁତେ
ଯାପୁଥିବ ଏ ବନ୍ଧୁମଣ୍ଡଳେ ।
ବସିଲଣି, ପଥିକ ହେ, ସାରା ନିଶିଥିନୀ,
ସହିଲଣି ଶୀତ ସକମ୍ପନ;
ପନେ ପନେ ଝରିବାର ତୁଷାର ବନ୍ଦୁର
ବହିଲଣି ହିମ ଆଲିଙ୍ଗନ ।
ସ୍ୱଦେଶେ ଥାଆନ୍ତ ଯେବେ ଆପଣା ଆବାସେ
ପୁଅ ପତ୍ନୀ ମଧୁର ଗହଣେ,
ସ୍ୱପନ ସୋହାଗେ ଶୋଇ ଶିକର ଶବଶ
ମରନ୍ଦେ ହୋଇଥାନ୍ତ ଜଗେ ।
ଆଜ, ଆହା, ତରୁତଳେ କାନ୍ଦୁଛ ଯାମିନୀ
ଦୁଖେ କାହା ହୃଦୟ ରତନ;
ମୁହିଁ ପାଶେ ଛୁଡ଼ା ହୋଇ ଅଚେନ୍ହା ବଦେଶୀ
କୁତୂହଳେ ଦେଖୁଛି ବଦନ ।
ଦୂରୁବ ଗଗନେ ଉଇଁ, ପ୍ରଦୋଷ ବହାରେ
ମରଗର ତାରା ତାରାପତି
ଅନନ୍ତ ଅୟନେ ଗଲେ ପ୍ରଭାତୀ ସନ୍ଧ୍ୟେ;
ଦେଖିଛ ତ, ହେ ଦୂର ଅତିଥି ।
ତୁମେ କାହାଁ ସେହିଭଳି ବସିଛ ମଗନ
ମହ୍ରୁ ତଳେ ଦୋସର ତରୁଟି ?
ନିଶୀଥ କୁହେଳି ସଙ୍ଗେ ଆସୁଅଛି ଏ ଯେ
ଉଷାସିକ୍ତ ଶୀତସିନ୍ଧୁ ସୋଟି ?

ବସିଛ ଧିଆନେ ଯେବେ ବସି, ହେ ବିଦେଶୀ,
ସହ୍ୟ ଏ ଯେ ଦାରୁଣ ଯାତନା,
ମୁହିଁ ମୋ ଭବନେ ଫେରି କି କରିବି ପୁଣି,
ରଚିବି କି ସୋହାଗ କଳ୍ପନା ?
ବସେ ମୁଁ ତୁମରି ପାଶେ ଆନ ବିଦେଶୀ ହେ,
ଆନ ଯାତ୍ରୀ ଏ ବିଶ୍ୱମଣ୍ଡଳେ,
ଯେ ହିମ ମରୁତ ବାରି ଲାଗେ ତୁମ ଦେହେ,
ବଜ୍ରାଘାତ ନାମିଛି ମୋ ଶିରେ ।
ପରାଚୀ ପାଦପ ପାରେ ନୀଳ ଅନ୍ତରୀକ୍ଷ
ରଞ୍ଜକର ଦୂର ଆଲୋକନେ,
ଦିବସ ତୋରଣ ଫେଇ ଶୋହିଲେ ତୁରନ୍ତ
କନକିତ ରଜତ ଭୂଷଣେ,
କୁସୁମ କେଶର ହାସେ ସ୍ନାହାନ ପାଇଁ କି
ଶିଶୁଗଣ ଆସିବେ ନିରତେ,
ପଲ୍ଲୀବଧୂ ନଣିଥିବ ମୁଖ ଉଜାଗର-
ପ୍ରବାହିତ କାମିନୀ ଉଲ୍ଲାସେ ।
ଦେଖିବେ ଉଦାସେ ଏଥି କୁହେଳି କାକରେ
ତରୁତଳେ ବସି ବେନି ଜନେ,
'ଏକାନ୍ତି ଆହା ଏ ଦୁଃଖୀ ଲୋକେ କି ଯାତନା',
ନ କହିବେ ଅଧର କମ୍ପନେ ।

# ଆରାଧ

[ ଏ ଦେଶର ବରେଣ୍ୟାବଳୀ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କୁ ଲକ୍ଷିତ । କବି ତାଙ୍କର ନିତାନ୍ତ ଅନୁରକ୍ତ ସହକର୍ମୀ ଥିଲେ । ପଣ୍ଡିତ ଗୋପବନ୍ଧୁ କବି ଓ ସତ୍ୟବାଦୀ ବିଦ୍ୟାମନ୍ଦିରର ଅନ୍ୟାନ୍ୟ କର୍ମୀଗଣଙ୍କୁ ବିଶେଷ ଭାବରେ ସେବା ଓ ତ୍ୟାଗମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ]

ପରାଣ ଦେବତା କରି ପୂଜନ୍ତି ଯତନେ
ବସା କରି ହୃଦ-ପୀଠ ସ୍ନେହ-ସିଂହାସନେ,
ନଇବେଦ୍ୟ ରୂପେ ଯାହା ଧରନ୍ତି ମୁଁ ଶତେ
ତୁମ ଯୋଗ୍ୟ କରି ଯେବେ ପାରନ୍ତି କହିତେ ।

ନିତ୍ୟ ଦାନ ଅବହେଳେ ବସି ଶ୍ରୀଚରଣେ,
କି ଯେ ତୁମେ, ଦେବ, ଚିହ୍ନି ନ ପାରିଲି ମନେ ।
ନିମିଷେ ପରାଣେ ଯେବେ ଉପୁଜେ ମୋ ଭୀତି,
ଅପର ନିମିଷେ ହୁଏ ଦୋଷର ପ୍ରଣତି ।
ଉଦାମ ଅନ୍ତରେ ଛେକ ଆସିଲି ବେଳକୁ
ନମ ହସେ ସ୍ନେହେ ଭାଷ ବଚନ ଶ୍ରୀମୁଖୁ ।
ସରଗ ସଂପଦେ ଭର୍ତ୍ତି ଖେଳଇ ଅନ୍ତର,
ଯେତେ ଯା ବୈରାଗ୍ୟ ମନ୍ତ୍ର ବିନାଶ ସକଳ ।

କି ଦୁର୍ଲଭ ଉତାପୂନ ସୁଧା ଧାରେ ଗନ୍ଧ,
ଏ ନବ ମୂରତି, ଦେବ, ଗଢ଼ିଅଛୁ ବନ୍ଧ !
ମାତେସ୍ୟ ମିଶାଇଛୁ ଲୋଡ଼ ଶୀତ ନେଷ ବାତ,
ପାଷାଣେ ଦେଇଛୁ ସ୍ନିଗ୍ଧ ଶୈବଳମା ଢାଳି,

ଅମା ନିଶି ଅନ୍ଧକାରେ ଫୁଟାଇଛୁ ବନ୍ଧୁ,
ମରୁ ଦେଶେ ଫେଡ଼ିଅଛୁ ପିକକଣ୍ଠୁ ମଧୁ;
ସପନ ସମ୍ପଦ ନେଇ ସରଗ ସମ୍ଭାରେ
ନହିଛୁ ସେ ଜନହିତେ ଏ ମର୍ତ୍ତ୍ୟ ଶରୀରେ ।

ବାଞ୍ଛିତ ବସ୍ତୁସ୍ୱ ସାଧି କ ସୁଖ ତିଆଗ,
ଦେଇଛ ଯାବତ ତେଜ ଜୀବନ ସୋହାଗ ।
ଆପଣା ସୌଭାଗ୍ୟ ଶିରି ବରଜ ଉଷତେ,
ପରହିତେ ପରଶିଛି ଢାଳୁଛ ନିରତେ ।
କ ପୁଣ୍ୟ-ପ୍ରଦୀପ ଜାଳି ହୃଦ-ନିକେତନେ,
ଚଉଦିଗ ପରଶୁଛ ମଧୁ ଆଲୋକନେ ।
ଜ୍ଞାନ ଗୌରବର କବା ଗଭୀର ବାରିଧି,
ରଖିଛ ହୃଦୟେ, ଦେବ, ନହି କୋଟି ନିଧି ।
ଗୋଟି ଗୋଟି ଯେବେ ମୁହିଁ ନିରେଖେ ନୟନେ,
ପବିତ୍ର ପ୍ଲାବନେ ପୂଜେ ଆମ୍ଭ ବନ୍ଧୁରଣେ ।

ଲୁମ୍ବିଣ ନଦେଶ ଆଜ ହୃଦ-ପୀଠେ ଧରି,
କରମ ସାଧନା ଭୂମେ ଅଛୁ ଅବତରି ।
ଏ ଦୁଖ ବିଷମ ପଥେ ବିହରି ହରଷେ,
ମିଳିବ ଯାବତ ଯାଇ ଦୁର ଧ୍ରୁବ ପାଶେ,
ସେତେବେଳେ ସନମାନେ ନଇବେଦ୍ୟ ଧରି,
ପୂଜା ତବ, ଆରାଧ୍ୟ ହେ, ସାରିବ ଆଦରି ।
ହୃଦୟ ବିସାରେ ମୋରେ ବନ୍ଧୁ, ପରସରେ
ରଖିଥାଅ ଅନୁଦିନ ଶ୍ରୀଚରଣ ତଳେ ।

# ଯାଅ

[ କବି ସତ୍ୟବାଦୀରେ ଶିକ୍ଷକ ଥିଲାବେଳେ ଶିକ୍ଷକତା ଶିଖିବାକୁ କଲିକତାରେ ନ ମାସ ଥିଲେ । ଏ ପଦ୍ୟରେ ଓ କବିଙ୍କର ଅନ୍ୟାନ୍ୟ ଅନେକ ପଦ୍ୟରେ ସତ୍ୟବାଦୀ ବିଦ୍ୟାଳୟ ଛାତ୍ରଙ୍କ କଥାର ଉଲ୍ଲେଖ ଅଛି । ଶୀତକାଳ ଛୁଟିରେ କବି କଲିକତାରେ ରହି ଏ ପଦ୍ୟ ଲେଖିଥିଲେ । ସେଠାରେ ତାଙ୍କ ସହିତ ଯେଉଁମାନେ ପଢ଼ୁଥିଲେ, ସେମାନେ ସମସ୍ତେ ବୟସ୍କ ଲୋକ । ଛୁଟି ହୁଅନ୍ତେ ସେମାନେ ନିଜ ନିଜ ଗ୍ରାମକୁ ଚାଲିଗଲେ । ]

ଯେ ଯାହାର ପୁରେ ଆଜ ଯାଅ ହେ ପୁଲକେ ଚଳି,
ରହିବି ଏକାକି ମୁହିଁ ବିଜନେ ପରାଣ ଢାଳି ।
ପଢ଼ାଘର ଅବକାଶେ ଚଞ୍ଚଳ ବାସନାବଳି
ହୃଦ-ମୀଠେ ଧରି, ବନ୍ଧୁ, ଚାଲି ଯେ ଯାଉଛ ଆଜି;
କାଲି ପୁଣି ଉଷା ନଭେ ନ ଚାହିଁ ଯାଉଣୁ ରାତି,
ଅଧେ ଚହବାଳ ଘାଟେ ଥିବ କୁଅାଟର ଭାତି,
ତୁମେ ଯାଇ ଜଣୁ ଜଣେ ମିଳିବ ନିଜର ବାସେ;
ପିତା ମାତା ପୁତ୍ର କନ୍ୟା ଲୋଡ଼ି ନେବେ ହୃଦ-ହାସେ ।
ବଦ୍ଧ ବନ୍ଧୁ ନ ଦେଖି ସେ ଏ ସୁଧା ବଦନ ଛବି,
ଦିନ ଗଣୁଥିଲେ ସୁଖେ ତୁମ ବାହୁଡ଼ିବା ପାଇଁ ।
ଆଜ ଯେ ବାହୁଡ଼ିଅଛ, କୁଟୀର ସଉଧମଣି,
ତୁମ ଭଳି ସୁଖୀ ଆଉ କିଏ ଏ ମରତେ ଗୁଣି ?
କନକ କେଦାର ପନ୍ଥ ମୃଦୁଳ ଚରଣେ ଛୁଇଁ,
ସାୟାହ୍ନ ସମୀର ଧାରେ ବୁଲିବ ଉଷ୍ଣତେ ଯାଇ ।
ଚିର ପରିଚିତ ନଈ ପୋଖରୀ ଶୀତଳ ଜଳେ
ଅଂଗ ଅବଗାହି, ବନ୍ଧୁ, ପଶିବ ହରଷଭରେ ।

ଘରର ଘରଣୀ ମେ ଯେ ସ୍ୱର୍ଗ ବୃନ୍ଦ ଜଣୁ ଜଣେ,
ସ୍ନେହଭରେ ଖାଉଥାନ୍ତି ଦେବେ ବାଢ଼ି କି ଯତନେ ।
ପୁଅ ଦୁହିତାଙ୍କ ମୁଖେ ଗୁଣ୍ଡା ଆଗେ ଭରିଦେଇ,
ଆନ ଗୁଣ୍ଡା ନିଜ ମୁଖେ ପଛେ ଦେଉଥିବ ନେଇ ।
ମାଆ ବସି ପୁଛୁଥିବେ ଦୂର ପରବାସ କଥା;
'ଖାଅ, ବାବୁ'—କହି, ଦେବେ ସେନେହେ ଆଉଁସି ମଥା ।
ପଦ ପଦକରେ ନେତ୍ର ଯୁଗଳ ଲୋତକ ଧାରା
ବିଷାଦ ପୁଲକ ରାଗେ ବହିଯାଉଥିବ ପରା !
ଯାଅ, ବନ୍ଧୁ, ଜଣୁ ଜଣେ; ଏ ଭଳି ସରଗ ଶିରୀ
ତେଜି, କପାଁ ମନୁ ଦେଲେ ଏଥି ଯାଉଥିବ ମଡ଼ି ?

ମୁହିଁ ଯେ ରହିଲି ଏକା ଏ ନିଜନ ଗ୍ରନ୍ଥାଳୟେ,
ଦିବା ସନ୍ଧ୍ୟା ନିଶୀଥିନୀ ଏକାକୀ ଯାପିବି ଧୈର୍ଯ୍ୟେ ।
ଉଦାସେ ଶୁଣିବି ଏ ଯେ ସରଣୀ ଜନତା ରୋଳ,
ଗାଡ଼ି ଘୋଡ଼ା ହୂର ନାଦ, କଳଯାନ ଘରଘର ।
ପଡ଼ୋଶୀ ପୁରନ୍ଧ୍ରୀ ପୁରେ ସେନେହ ସୋହାଗ ବାଣୀ
ଅଧେ ଘେନି, ହୃଦୁଁ ଅଧେ ବିସରଜି ଦେବି ଜାଣି ।
ନୟନ ମୁଦିଲେ, ମୋର ସୁଦୂର ସରଗ ପୁର,
ନିକୁଞ୍ଜ ଅନଳ ଧୌତ କନକ ବିତାନ ତଳ;
ନିଶୀଥ ସୀମାନ୍ତ ସ୍ନିଗ୍ଧ ନିମିଷେ ପଖାଳି ତନୁ,
ନୟନେ ଯେ ନିରେଖନ୍ତି ପରୀ ବାଳୁତ ଧାନ୍;—
କୁଞ୍ଜ କୁଞ୍ଜେ ଭରି ସେହି ଫୁଟନ୍ତ ପ୍ରତିମା ଗଣ
ମୋ ପ୍ରାଣ ପରଶମଣି, ହୃଦୟ ପୀୟୂଷ ଧନ;

ଅଯୁତ ଯୋଜନ ଦୂରେ ଯାହାଙ୍କୁ ଆସିଛୁ ତେଜି,
ସେ ସକଳ ଏଥି ଅବା ଲଭିବ ପଲକେ ଆଜି ।
ନଗରୀ ମଉଧ ଚୂଡ଼ା ପାଷାଣ ପ୍ରସାର ଭେଦି
ବକୁଳ ତମାଳ ବଟ ଛୁଇଁଅନା ଶ୍ୟାମ ନଦୀ,
ସେହି ପଥ, ସେହି ଘାଟ, ସେହି ମୋ ହରଷୀ ଘର;
ଏ ଦୂର ପ୍ରବାସେ ସବୁ ଲଭିବି ମୁଁ ଅବିରଳ ।
ଯାଅ ଯାଅ, ବନ୍ଧୁଗଣ, ସୁଖେ ଯେ ଯାହାର ବାସେ,
ରହିବି ମୁଁ ଏକାକୀ ଏଥି ମୋ ସ୍ୱଜନ ପରଦେଶେ ।

## ଧ୍ରୁବତାରା

ଏ ସ୍ୱଜନ ବାଟେ ଏକାକୀ ଜନ ମୁଁ
ଭୁଲି ନ ପାରିବ ବୋଲି,
କେତେ ଆଶା କରି ଆସ୍ଥା ତବ, ସଖୀ,
ଥିଲି ଏ ଜୀବନେ ଲୋଡ଼ି ।

ହସ ହସ ଯେବେ ହୃଦୟୁ ସେନେହେ
ନିମିଷେ ଆସିଲ ଧାଇଁ,
ସେ ସୁଧା ମୁହୂର୍ତ୍ତେ ପିବ କି ମନୁ ମୋ
ଏ ପିଣ୍ଡେ ରହିଣ ଥାଇ ?

ମୁହିଁ ହୋଇ, ମୋର ଆପଣାର ଯାହା
କିଛି ତ ନ ଥିଲା ଜାଣି;
ନୂଆ ଅଂଗ କବା ଗଢ଼ି ଦେଲ ତୁମେ,
ନୂଆ ହୃଦ ଦେଲ ଆଣି ।

ଦୂରକୁ ନିକଟ କଲ ମୋର, ସଖା,
ଅଚିହ୍ନାରେ କଲ ଚିହ୍ନା;
ମରତ ପୀୟୂଷ ଯେତେ ମୋ ମରତେ
ସକଳ ତୁମରି ସିନା !

ବାଇଚରୁ ବନ୍ଧ ସାଧିଲ ସୋଦରେ—
ଜଗତ ବାନ୍ଧବ ଗ୍ରନ୍ଥି;
ଧୂଦ-ଦେବ ପରେ ବଚଲ ବେଳକୁ
ପରଶ ନୁହଇ ଥିତି ।

ତୁମେ ତ ଗଲଣି, ତୁମ ଆସିବାର
ଅଧେ, ସଖା, ଅଛି ରହି;
ଯହିଁ ଥିବ, ଯହିଁ ଯିବ ମୁଁ, ଏ ମୃତି-
ଧ୍ରୁବତାରା ଥିବ ବହି ।

## ଏକାକୀ ଅଳି

ତରୁ ଲତା ଅଶେଷିତ ଗହନ କାନନେ,
ଶ୍ୟାମଳ ସମ୍ପଦେ ତନୁ ମଣ୍ଡି ଦୂଷଣେ ।
ମୃଦୁଳ ପରଶେ ଯେବେ ବହଇ ସମୀର,
ପ୍ରତି ଶ୍ୟାମ ଅଙ୍ଗେ ଖେଳେ ତରଙ୍ଗ ରୁଚିର ।
ସେ ଖେଳେ ଏକାକି ଧୀରେ ଯାଉଥାଏ ଭ୍ରମି,
ମରମେ ଅଳିଟି କାହିଁ ନ ପଡ଼ଇ ନମି ।
ପଞ୍ଚ ସମସ୍ତନେ ମିଶି, ପିକ କଳ ତାନେ
ସେ ଅଳି ଗୁଞ୍ଜନ ଯାଏ ନଭ ଉପବନେ ।

ନନ୍ଦନେ କାନନେ ଚମ୍ପ ଘନ ଗନ୍ଧଜାଲୁ ଉଠି,
କଣ୍ଟକପୁ ବିକଶିଲା ଫୁଲଟିଏ ଫୁଟି ।
କାନନର ସକଳ ନବ ଶ୍ୟାମଳ ଯୌବନେ
ଏକାକୀ ଚାହିଁଲା ଶିଶୁ ଅନାଏ ନୟନେ ।
ସଂବାଦ ସଂଦେ ତାର, ଅଟଣୀ ଅନିଳ
ତା ତନୁ ଚରଣପାଇଁ କରେ ଅଣି ଠୁଳ ।
ଚଥୁଚରେ ଧୀରେ ଧୀରେ ମଧୁ ଖେଳେ ଗଳି,
ମଧୁଧାରା ରଚୁଥାଏ କାନନେ ଆଙ୍କର ।
ମଳୟ ହିଲ୍ଲୋଳେ ଭାସି, ନବ ସଉରଭେ
ଉପବନେ ଢାଳେ କୋଟି କନକ ବିଭବ ।
ଡାଳୁ ଡାଳେ ଉଡ଼ି ବୁଲେ ଏକାକୀ ଅଳିଟି,
କାନନ ସମ୍ପଦେ ମାତ୍ତି ନିଜ ଗୁଂଜ ଗୀତ ।
ସୁମନ ସୁରଭି ଧାରେ କରେ କେତେ କେଳି,
ଏସ ବନ ପ୍ରେମିକବର ଚଷୁ ଚଷେ ଖେଳ ।
ଦୂରୁ ନିରେଖଇ ନେତ୍ରେ ମୋହନ ମୂରତି,
କଣ୍ଟକପୁ କି ସୁଖେ ଏସ ଉଲ୍ଲସି ଫୁଟି ।

ବିଧାତା ବିଧାନ ଭବେ ଏତେ ଅଘଟନ,
ହୃଦରେ ବାନ୍ଧଇ କେତେ ନମିତ ଜୀବନ ।
ଦିବସଟି ପୂର ଅବା ଶୋହନ୍ତି କି ନାହିଁ,
ଫୁଲଟି ଝଡ଼ିଲା ଡାଳୁ ଭୂମିଶେଯେ ଯାଇ ।
ଜୀବନ ସୋହାଗ କ୍ରୀଡ଼ା ସରିଲା ନିମିଷେ,
ଧୂଳି ତଳେ ଝଡ଼ି ଏବେ ଚକ୍ଷୁ ବରଷେ ।

ସୁଖେ ତା ଉଡ଼ିବା ଚାହଁ ବରଜ, ଅଳିଟି
ବସିଲା ସେ ଫୁଲେ ଆସି, ପ୍ରିୟଜନ ଗ୍ରନ୍ଥି ।
ଦେଲେ ତା ବଦନ ଓଷ୍ଠେ ଚରଣିବା ପାଇଁ,
ଫୁଲ ମଧୁଦାୟୀ ଅଳ ମନ ବଳେନାହିଁ ।
କ୍ଷଣେ କ୍ଷଣେ ଫୁଲଟି ସେ ଯାଉଛି ମଉଳି,
ମଉଳେ ଅନାଇ ବସି କ ଜଳଇ ଅଳି !
ସମୀରେ କାନନ ଗାଏ ଧୀର ସନ ସନ,
ଶ୍ୟାମଳେ ଅରୁଣ ଢାଳେ ସରଗ କାଞ୍ଚନ ।
କାହିଁରେ ନଧୁନ ନାହିଁ ଫେରେ ଅଳିଟିର,
ଭୂତଳେ ସେ ସେହ୍ନଜଳ ବସିଛି ନିକର ।

କେତେ ବନେ ଉପବନେ ଫୁଲ ଅଗଣିତ
ଡାଳ ପତ୍ରେ ଫୁଟି ପୁଣି ଝୋହ୍ନଲେ ନିରତ ।
ସଉରଭେ ବନ ଦେଶ ଚହଟାଇ ସୁଖେ,
ଖେଳିଲା ଆବର ବନେ ଅନିଳ ପୁଲକେ ।
କେତେ ଅଳି ଫୁଲୁ ଫୁଲେ ଯାଉଥାନ୍ତି ବସି,
ଫୁଲୁ ଫୁଲୁ ନେଉଥାନ୍ତି ମଧୁ ବନ୍ଧୁ ଶୋଷି ।
ସେ ସେ ଅଳି ଏକାକିଟି କାନନବହାର,
ଏତେ ଅଳି ମେଳେ ଆଜ ଖେଳୁ ନାହିଁ କ୍ଷତ ।
ସେ ଏକା ଫୁଲଟି ଯାଇଅଛି ସେ ସାଇତେ,
ତା ଭୁଲେ ରହିଁ ସେ ଅଳି ସୋହାଗେ ବସାଇ ।

## ଭେଟ ହେବ ମୁକର

ନିତି ନିତି ଏହି ବାଟେ ମୁଁ ବୁଲିଯିବାର ବେଳେ,
ତୁମେ ଗୋ ରହିଛ, ନିରେଖେ, ବସି ମଉନଭରେ ।
ଢଳ ଢଳ ବେନି ନୟନେ ଥାଏ ଲୋତକ ପୂରି,
ଘନ ଘନ ଆସେ ନିଃଶ୍ୱାସ ଧାରା ହୃଦୁଁ ଉଛୁଳି ।
ରବି ଯେବେ ଉଏଁ ସରାଗେ ପ୍ରାଚୀ ଗଗନ ତଳେ,
କି ସରାଗ ଛବି ଏ ମର୍ତ୍ତ୍ୟ ଚିତ୍ରେ କନକ କରେ ।
ସେ ରବି ଆବର ଯାଆନ୍ତେ ଦୂର ଭୂଧରେ ଲୁଚି,
ସ୍ୱର୍ଣ୍ଣ ସଳିଳ ଭୁବନେ ବ୍ୟୋମ ଦିଏ କି ସିଞ୍ଚି ।
ପ୍ରଦୋଷ ବିମଳ ତାମସେ ମିଶି ଜ୍ୟୋତ୍ସ୍ନା ଜାଳ,
ଘୋଟିଯାଏ ଗ୍ରାମ ଗଗନ ବିଲ ପ୍ରାନ୍ତର ମାଳ ।
ସେତିକିବେଳେ ତରୁ ଶିଖରେ, ଶ୍ୟାମ ଶୈଳ ଶିରେ,
ଦୂର ରକ୍ତ ଶିଖା ସୁନ୍ଦର ଝଲୁଥାଏ ଛଇଳେ ।
ତୁମର ଏସବୁ ସମ୍ପଦେ ତିଳେ ନ ଭୁଲେ ମନ,
ଏକା ଟକ ଚାହିଁ ରହିଛ କାହିଁ ଢାଳି ନୟନ ।
ଶୁକ ପିକ ଗାଉଥିବାର ଲତା ନିକୁଞ୍ଜେ ବସି,
ତୁମ ଏ ଶ୍ରବଣ ଯୁଗଳ ନାହିଁ ପାରେ ପରଶି ।
ଏହି ଯେ ବନ୍ଧୁର ତଟିନୀ କଳ ଗୀତିକା ସ୍ରୋତେ,
ଛୁଟିଚି ଯାଇ ସେ ମିଳିବ ଦୂର ବାରିଧି କୋଳେ ।
ତା ଗୀତିକି ଲବେ ଧିଆନ ଦେଉ ନାହିଁ ଯେ ତୁମେ,
କେଉଁ ନୀରବ ଗାଥା ଉଚ୍ଚାରି ଯାଉଅଛ କି ଶୂନ୍ୟେ ?
ବନ ପରବତ ପ୍ରାନ୍ତରେ ସଞ୍ଜ ସକାଳେ ନିତି,
ତରୁ ଲତା କୁଞ୍ଜ ମଣ୍ଡନେ ବୁଲି ଉଦାସ ମତି ।

ତରୁ ଲତା ଅଙ୍ଗେ ଉଜ୍ଜ୍ୱଳ ପଡ଼ୁଥାଏ ଯେ ଶିରୀ
ଝମିଶେ ନ ଯେଘନ ନୟନେ, ହୃଦେ କି ଥିବା ଖେଳି !
ଏ ସକଳୁ ବଳି ସମ୍ପଦ କିବା ଅଛଇ ସତେ,
ଯା ଲାଗି ଏ ଭଳି ଧିଆନ, ଚିନ୍ତା ସାଧନା ଏତେ ?
ଏତେ ଯେ ତିଆରେ ଜୀବନ ଗଢ଼ୁଅଛ ନିକର,
କୋମଳ ଏ ନାରୀ ପରାଣ କରିଦେଉଛ ଜଡ଼ ।
ସରଗେ ଯାଆନ୍ତି ହଜିଣ ଯାର କାର୍ତ୍ତିକ ମାସେ,
ନିଶୀଥ ପ୍ରଦୀପ ଧୂଳିକେ ଜାଳିଦିଅ ଆକାଶେ ।
ବୃନ୍ଦାବଣ୍ଟ ନଳେ ଅରପି ହୃଦ ବନ୍ଦନାଟିକ,
ସ୍ୱପନ ସପନେ ଯାଚୁଛ ସ୍ୱର୍ଗ ନିଶ୍ରେୟପାକ ।
ଏତେ ଏତେ କଥାମାନ ଗୋ, ଏତେ ଧିଆନ ତବ,
ଦିନ ଦିନକର ଏ ଯେଉଁ ଗୁଡ଼ ହୃଦୟୁ ଛବ,—
ତିଳେ ତହୁଁ ସତେ ଜଗତେ ଯିବ ବ୍ୟର୍ଥ ହୋଇ,
କେହ ବାର ପ୍ରୀତି ବନ୍ଧୁକ ଶୂନ୍ୟେ ଯିବ ଉଡ଼େଇ ?
ଅନ୍ତରୁ ବଢ଼ି ଯେ ଆସଇ ଘନ ନିଃଶ୍ୱାସ ନିତି,
ଏ କଷ୍ଟେ, କି ନାହିଁ କହ, ଯା ତାକୁ ପାରିବ ଭେଟି ?
ବସିଥାଅ ତପସ୍ୱିନି ଗୋ, ହୃଦ ମନ୍ତ୍ରର ଜପି,
ପରାଣ ସୋହାଗ ସମ୍ପଦ ସବୁ ତହିଁ ଅରପି ।
ହୃଦୟୁର ଆଶା କଣିକା, ନେଇ ଗୁପତେ ଶିର,
ସଞ୍ଚିଥାଅ, ନାରୀ, ଯତନେ; ଭେଟ ହେବ ମୂକର ।

## ଦଅଯିବ ନାହିଁ

ପ୍ରୀତିମାଳା ଗୁନ୍ଥି ବାକୁ ଫୁଲ ଆହରଣେ
ମିଳିଲି ମୁଁ ଯାଇ ଏକା କୁସୁମ-କାନନେ ।
ଯୂଇ ଯାଇ କୁନ୍ଦ ମଲ୍ଲି ମାଧବୀ ମାଳତୀ
କାମିନୀ ନିଆଳି ଚମ୍ପା କେତେ ଅଛି ମୂର୍ତ୍ତି ।
ଛଅ ଋତୁ ମଧ୍ୟେ ନାହିଁ ବିରୋଧ କାହାର,
ସବୁ ଋତୁ ମିଶି ଶୋଭା ବରଚନ୍ତି ତାର ।
ନନ୍ଦନକାନନ ସଙ୍ଗେ ଝଡ଼ିବେ ମରନ୍ତେ,
ସେ ଲାଗି ତତ୍ପର ଆଜ ଯେ ଯା ଶକ୍ତି ମତେ ।
ମାଧ୍ୱୀକ କନକେ ଢଳି, ସୁଧା ସମୀରଣ
ନିମିଷ ପରଶେ ଯାଏ ଛୁଇଁ ଉପବନ ।
ଅଗଣିତ ମଣି ସ୍ତବ, ସରଗ ପ୍ରତିମା,
ନାଚନ୍ତି ଖେଳନ୍ତି କେତେ, କୋହିବ କଳନା ।

ମାଗୁଣି ଦେନି ମୁଁ ବନେ ଏକ କଳି ଯାଇ,
କୁସୁମ କଳିକା ମୋର ପ୍ରୀତିମାଳା ପାଇଁ ।
ପ୍ରୀତିର ପ୍ରତିମା ମୋର ଯେ ପ୍ରାଣ-ଦେବତା,
ଯାହାଲାଗି ସମର୍ପିତ ଏ ଜୀବନ ସତ୍ତା ।
କି ଅଛି ଜଗତେ ତାଙ୍କ ଯୋଗ୍ୟ ଉପାୟନ,
ସଁପି କରେ ସାର୍ଥକ ମୋ କରିବ ଜନମ ?
ସେ ଲାଗି ଜଗତଯାକ ଖୋଜେ ମୁଁ ସତତ,
ବସ୍ତୁ ଶ୍ରେଷ୍ଠ ନିଧିମାନ ଯେତେ ବହୁଦତ ।

ମମ ମନ କରେଛି ଦିବ୍ୟ କୁସୁମ-କାନନ,
ଫୁଲ ଆଶେ କର ପାତି କଲି ନିବେଦନ ।
ଉପବନ ଫୁଲ ସିନ୍ଧୁ ମାଧୁରୀକ ବନ୍ଧ,
କଏ ଆହା ଆସି, ଶୁଷ୍କା ପ୍ରତିମାଟି ପଶି,
ବନ ସ୍ତନୁ ଭନ୍ଦ ସ୍ୱରେ, ମୋ ନୟନେ ଚାହିଁ,
କହିଲା ଉଦାସ ଭାବେ, "ଦିଆଯିବ ନାହିଁ" ।

ଖାଲି ହାତେ ତହୁଁ ମୁହିଁ ଆସିଲି ବାହୁଡ଼ି ।
ଫୁଲ ନାହିଁ, ପ୍ରୀତିମାଳା ଗୁନ୍ଥିବି କପରି ?
ନିରାଶାରେ ପରାଣ ମୋ ଦେଲା କି ଭାଜି !
ଗୋଟି ଗୋଟି ଛିଡ଼ି ଦେଲେ ପ୍ରୀତି ଡୋରି ରାଜି ।
ମାତ୍ର ମେ ମସ୍ତକେ କାହୁଁ ଆସିଲା ଝଲକେ
ଘନ ସୌଦାମିନୀ ଶିଖା ଉଜଳ ଝଟକେ ।
ତା ମଧ୍ୟେ ଦେଖିଲି ମୁହିଁ, ମୋ ପ୍ରୀତି ଚମର
ହସ ହସେ ଉଡ଼ୁଛନ୍ତି ବ୍ୟାପି ବ୍ୟୋମ ଧର ।
ଆହା, ସେ ଅମୃତ ବାଣୀ ମାଳ ଗୁନ୍ଥି ମନେ
ଥାପି ମୁଁ ପାରନ୍ତି ଯେବେ ପ୍ରିୟଙ୍କ ଚରଣେ,
ତାଙ୍କଭଳି ତାହା ଏକା ହୁଅନ୍ତା କଣ୍ଠତେ;
ମୋ ପ୍ରୀତିର ପ୍ରତିରୂପ ମଣନ୍ତି ମୁଁ ଚିତ୍ତେ ।

# ଭିକାରୀ

ଦୁଆରୁ ଦୁଆରେ ବୁଲ, ରେ ଭିକାରୀ,
ବାଧିବଣି ଅଂଗଶ୍ରମ;
ଏ ଭିକ ମୁଠିକ ଯେନି ଏବେ ଘରେ
ଫେରି ଲୁ ଯାଅ ବନ୍ଧନ ।
ନିତି ନିତି କେତେ ବୁଲୁଛୁ ଏ ଭଳି
ଗାଆଁରୁ ଗାଆଁକୁ ଯାଇ,
ସ୍ତ୍ରୀ ଦୁହିତାଂକ ପେଟ ପୋଷିବାକୁ
ଚାଉଳମୁଠିକ ପାଇଁ ।
କେତେ ଠାବେ କେତେ ଗାଳି ଗୋଭବ
ସହୁଛୁ ମଉନ ଭରେ;
ଧନୀ ନୟନର ରକ୍ତିମ ଚାହାଣି
ବହୁଛୁ ନୀରବ ଭାଳେ ।
ଖରା ବରଷାରେ ଶୀତ ଜଣି ହିମେ
ଧୂଳିକେ ଯାଉଛୁ ବୁଲି,
ଜୀବନର ମଧୁ ଧ୍ରୁବତାରାଟି ତୋ·
ହୃଦୟ-କେନ୍ଦ୍ରରେ ଧରି ।

ଯାହା ଲାଗି ଏତେ ଦୁଖ ଦୁରଗନ୍ତ,
ପରାଣ ନିଃଶ୍ୱାସମାନ—
କହେ କି ଏଥୁ ସେ ପାଉଥିବେ ଜାଣି,
ଉଦାସେ ବଞ୍ଚାଇ ଦିନ ?

କ ଚୀରତ୍ ହୃଦେ ଧନ୍ଦେରେ ଚୋଷି
ଯାହାର ଅନୁଜ୍ଞା ମାନ,
ଏ ଦୁଃଖ କଥଣ ଅଧର ଚରଙ୍ଗେ
ର୍ଯାଣିତ କର୍ତୁ ଆଣି ।
ଏ ସକଳ କଥା ପାରନ୍ତେ ଯେବେ ସେ
ଜାଣି ଲବ ମାଟରକ ।
ଟାଣୁକ ନମିତେ ଘୁଡ଼ନ୍ତେ ? ଭୁ ପଟ,
ଆଂଗୁଠିକ ଅଗ୍ରୁ ନଖ ।

ଦୁଆରୁ ଦୁଆରେ ମାଗି ମାଗି ଯାଉ,
ବଖାଣି ହରଷଭରେ
ଦୁଃଖୀ ତରଣରେ ଯେ ଗୂଢ଼ ବାରତା
ରହିଛୁ ଏ ମନ୍ତ୍ରତଳେ ।
ଚାଉଳ ମୁଠିକ ପାଇଁ, ରେ ଭକାଣ,
ନେଉ ଏତେ ଅପମାନ;
ସବଟେ ମୁଠିଏ ଦେଲେ ଜଣେ, ଦେଉଁ
ଅନାଏ ଦୋସର ଜନ ।
ଯାହା ଦୁଆରେ ଯେ ହୁଅଇ ଭକାଣ
ଏ ବଣ୍ଡ ଅନନ୍ତ ଦେଶେ,
କୁବେର କନକ ସଉଧ ବେଢ଼ାରେ
ସୁଦାମା କାଙ୍ଗାଳ ବେଶେ—
ସେ ଯେବେ ଜମିଛେ ଘେନନ୍ତା ହୃଦୟେ
ତା ହୃଦ୍ ବେଦନାମାନ,

ଏ ଦୁଃଖ ନଗରୀ ଘେରିଲେଣି ସକଳ
କାହିଁକି ଜାଣେନା ପ୍ରାଣ ?

ଦୁଃଖୀ ପାଇଁ ଯେବେ କାହାର ଜଗତେ
ନ କାନ୍ଦେ ଅନ୍ତର ଲବେ;
ଯାହାର ଯେତିକ ଧନ ମାନ ଶିରୀ
ଧୂଳା ତାର ହୁଏ ଭବେ ।
ସୁନ୍ଦର ସୁମନ ତରୁ ଡାଳେ ଖୋଜ
ଆମଇ ମଧୁର ବାସ;
ତଳେ ଝଡ଼ ପଡ଼ିଥିବାର କଲଙ୍କି
ପଶନ୍ତେଣ କେବଳ ଘାସ ।
ବରଷା ଧଉତ ଜଳଦ କପୋଳେ
ଶୋଭେ ସୌଦାମିନୀ ସିନା;
ଗ୍ରୀଷ୍ମେ ସରସୀ ପଂକଜ ଲଲାଟେ
କି ଅଛି କର୍ଦ୍ଦମ ବିନା ?

ପରାଣ ପୀରତି, ଅନ୍ତର ସ୍ନେହେ
ଭୋଗୀ ଯେ ହୁଅଇ ଭବେ,
ସେହୁ ମିନା ଯାଇ ଶୂନ୍ୟ ହୃଦେ ନିତ
ମାଗଇ କ୍ରନ୍ଦନ ରବେ ।
ତା ମାଗୁଣି ଯେବେ କୋଥିଲ ନବାର
ସୁବର୍ଣ୍ଣ ମେରୁ ଶଇଳେ,

କି ଲୋଭ ଜଗତ ଅତୁଳ ସମ୍ପଦେ
ସରଗ ମରତେ ଥିଏର ?
ତୋ ମ୍ଳାନ ବସନ, ଦୁଃଖୀଜନ ବେଶ-
କରୁଣ ମାଗୁଣି ମୂର,
ଏ ଯେଉଁ ଅବମା ଅସୀମ ଅମୃତ
ସରଗେ ଉଠେ ଉଛୁଳ,—
ବନ୍ଧୁ ବନ୍ଧୁ ଏଥି ଭିତର ଯାଆ ରେ
ଦୁଆରୁ ଦୁଆରେ ଆଜ,
ତୋ ହୃଦ ମଧୁରେ ପୂରୁ ମହୀତଳେ
ଏ ଶୂନ୍ୟ ହୃଦୟରାଜ ।
ତୁ ମହା କୁବେର ଏ ବିଶ୍ୱ ବଜାରେ
କି ନିଧି ନ ପାରୁ ଢାଳି ?
ତୋ ପାଶେ, ଭିକାରୀ, ମାଗନ୍ତି ସରବେ,
ତୋ ଠୁଁ ଅତି ଭିକାରୀ ।
ବେଳ ତ ବହୁତ ହେଲାଣି, ତୋ ଜନେ
ବାଟ ବସି ଥିବେ ଚାହିଁ;
ଦୁଆରୁ ଦୁଆରେ ମାଗି, ତୁ ବୁଲିବେ
ଭେଟରେ କୁଟୀରେ ଯାଇ ।

## ବିଧବା

କିଏ କହେ, ବିଧବା ଗୋ, ଚିରନ୍ତ ଦୁଃଖିନୀ
ଏ ବିଶ୍ୱ ସମ୍ପଦ ମଧ୍ୟେ ରହିଛ ରମଣୀ ?
ହରାଇଦେଇଛ ଯାହା ପରାଣର ଧନ,
ପଥ ଭିକାରିଣୀ ଦୁଃଖେ ଯାପୁଛ ଜୀବନ ?
ଏ ଜଗତେ ବିଶ୍ୱଶିଶୁ ଅବନୀ ଗଗନେ,
ଅନନ୍ତ ବିସ୍ତାରେ ପୂରି ଅଛି ଅକଳନେ ।
ଏ ଶିଶୁ ସକଳ ପୁଣି ଜଣି ଅବହେଳେ,
ତୁମ ନାଥ, ବିଧବା ଗୋ, ବିରାଜେ ଭୂତଳେ ।
ହରାଇ ଦେଇଛ ସତ ପରାଣର ଧନ,
ମରତ ସମ୍ଭୋଗେ ଯେବେ ନୋହିଲ ମଗନ ।
ଏ ଯେ କଳ୍ପ ବସିବାର ନରଗତ ଅନାଇଁ,
ଜପିବାକୁ ସେ ମନ୍ତ୍ର ହୃଦପୀଠ ଥାଇ;
ଏ ଯେଉଁ ସାଧନା ନିତି, କଠିଣ ତ୍ୟାଗ,
ରଖିବା ପରାଣେ ଜାଳି ପ୍ରୀତି ପୂତ ଯାଗ;—
କି ଅଛି ଜଗତେ ପୁଣି ହେବ ସରିସମ ?
ଏ ଧନ ଦଇନେ ତୁମେ ହିଁ ଦେବ ରତନ ।
ବଞ୍ଚିଥାଅ, ବିଧବା ଗୋ, ଜାଳିଥାଅ ପ୍ରୀତି,
ଅନନ୍ତ ଏ ବ୍ରତେ ଜନ୍ମ ଯାଉ ତବ ବିତି ।

# ନିମିଷକ ଅପସର

ଏତେ ଦିନ, ଦେବ, ଦିବସ ଯାମିନୀ
ରହି ମୁଁ ସଙ୍ଗତେ ନିତି
କି ସେ ତୁମେ ବାରେ ଚାହିଁ ନ ପାରିଲି;
ଗଲା ଏ ଜୀବନ ବିତି ।
ତୁମ ତୁଳେ ସୁଖେ ହସଇ ଖେଳଇ,
ଭୁଲୁଥାଇ ଗିରି ବନେ;
କଲ୍ଲୋଳମୟ କଳ ଗୀତ ମଧୁରିମା
ଶୁଣଇ ହରଷ ମନେ ।
ଏକାନ୍ତ ବସି ମୁଁ ପରାଣ ବାରତା
ଗୋପନେ ଶୁଣିଛୁ କେତେ;
ପୀୟୂଷ ବଚନେ ଫେଡ଼ିଦେଉଥାଅ
ଅନ୍ତର କାହାଣୀ ଯେତେ ।
ସଖା ସୋଦରଙ୍କ ମେଳାପେ ଆବର
ସେ ମୂରତି ବିମୋହନ,
ଥରୁଁ ଥର, ଦେବ, ନିରେଖି, ଆଜି ହେ
ମଧୁମୟ ଏ ନୟନ ।
ଦେଖିଣ ବା ବିଦ୍ୟୁତ ସୁଖ ଦୁଃଖେ ନାଚି
ସେ ଦିବ୍ୟ ବଦନ ଶିଖା
ଲେଖି ହୃଦପଟେ, ଭକତି ସୋପାନେ
ଦୂରର ପାଟଣି ଥାଏ ଧରି ।

ତଥାପି ଜନନ ମୁଁ ଜାଣି ନ ପାରିଲି
କିଏ ଅଛ ରହି ତୁମେ
ଏ ମର ଅବନୀ ମାନବ, କି ଅବା
ସରଗ ଦେବତା ତୁମେ ।
ପାଷାଣୁଁ ବଳି ତ କଠୋର ଆହୁରେ
ଦଳିଯାଅ ଥରେ ଥରେ;
ନମିଷକେ ଅନେ ବନ୍ଧଯାଅ ପୁଣି
ଓଁର ଘର ଢାଳ ତଳେ ।
ଶୀତ ସାନ୍ଧ୍ୟାନ୍ତର ପରଶ ଦୁର୍ଲଭ
ତେଜ୍ସ ବସନ୍ତ୍ର ବଳ,
ଦେବଳ ବେଳେ ଯେବେ ବନ୍ଧୁଜନ ସେମେଳେ
ନ ହୁଅ ପରଶ କରି;
ଚଲନେ ଆବର କି ମଧୁ ମୁରତେ
ଝଟଳି ଯୁକ୍ତି ଯାଅ ଧୀରେ;
ଶ୍ୟାମଳ ସମ୍ପଦ ବନ ତଳୁ ଶାଖେ,
ଖେଳ ନାଥ କବା ଘରେ ।
ଶୋକ ସନ୍ତାପେ ଛୁ, ନବୀନ ବଇଷ୍ଣେବ,
ନବୀନ ବା ବସରେ ନୁହଁ,
ଚିର ମରିଚର ନେହ ମୂରତିଟି
କେବେତ ମୁହିଁ ଦେଖିନାହିଁ ।

ନଶୀଥ ଗଗନ ଦୁର୍ଲଭ ରତନ
ନଶାମଣି ରୂପଶିଖା

ଧନ୍ଦୁ ମରଣରେ ନମିଷକେ ପୁଣି
 ଧରଣୀ କେଉଡ଼େ ହଜିଶିଖା ।
ତୁମ ବଦନର ସେ ସ୍ମିତ ଧାରଟି
 ପ୍ରତିଭାତ ଅଧରର,
ଯେବେ ଚହିଁ ନେବ ବିରସ କାଳିମା
 ଦେଖନ୍ତୁ ଚରଣିବାର ।
ନମିଟେ ତେବେ ବା ମଣି ମୁଁ ପାରନ୍ତି
 ଗଢ଼ିଛି ତୁମକୁ ବନ୍ଧୁ,
ଏ ମର ଜଗତ ସୁଖ ଦୁଃଖେ ମୋର
 ଅମର ସୋହାଗ ପାଇଁ ।
ଆପଣାର ବୋଲି ଲୋଡ଼ିଲି ବେଳକୁ
 ହୋଇ ପୁଣି ଯାଅ ପର;
ସ୍ନେହ ସନମାନେ ବସନ୍ତେ ସଙ୍ଗରେ
 ପରାଣେ ଉପୁଜେ ଡର ।
ତେବେ ହେଲେ ମୋର ଆପଣାର ଯାହା,
 ହୃଦୟ ଅମୂଲ୍ୟ ଧନ,
ତୁମ ପାଖୁ ଦୂରେ ରଖି ମୁଁ ନ ପାରେ,
 ଯେତେ ପଛେ କରେ ପଣ ।

ଫୁଟିଅନା! ବଠ ବକୁଳ ବିପିନେ
 ବିହଙ୍ଗ ପୁଲକ ଭରେ,
କୁଞ୍ଜ କୁଞ୍ଜେ ମଧୁ ବିତରି ଯାଅ ହେ,
 ଡାଳ ପତ୍ର ଫୁଲ ଫଳେ ।

ଶିଶୁ ଶିଷ୍ୟ ମେଳେ ରହି, ମତେ ଏଥି
  କଠୋର ହୃଦୟେ କବା
କୋମଳ ଚରଣ ଶାସନ ସଂଯମେ
  ଲାଗିଥାଅ ନଣି ଦବା ।
ତାଙ୍କ ସୁଖ ଦୁଃଖେ ତାଳ ଆପଣାଙ୍କୁ,
  ରହନ୍ତୁ ତାଙ୍କର ସମ;
ସୁଗୁଣେ ଯେପରି ଲଭ ଦର୍ଷ ନେତ୍ର,
  ଅବେବେଗ ସଂଶୋଧ ଭ୍ରମ ।
ଆପଣା ବଚନେ ଭାଇ ବନ୍ଧୁ କଥା
  ଧରନ୍ତେ ହୃଦେ ଯେ ବହି,
ସକଳ ମୁରୁଛି, ଏ ମେଳେ ମର୍ଜି ନେହ
  କ ଧୂଳକେ ଅଛ ରହି ।
ଯେତେ ଠାବେ ସହିଁ ସପଦେ ଆନନ୍ଦ
  କରମ ମୋହନ ବାଣୀ,
ଦୂରେ ଯାଏଣ ଶୁଣେ, ତହିଁ ଢଳୁଥାଏ
  ତୁମର ବଦନ ଠାଣି ।
ଏତେ ତ କଣ୍ଠ ନେଇଅଛ ନେଡ,
  ରଖିଛ ସୋଦର କରି;
ମୁଁ ଆହା ଦୂରସ୍ଥେ ଯାଇ ପାରନ୍ତି ନେ
  କମିଛକ ଅବସର !
ଦୂର ଦେଶୁ ଆସି ବସନ୍ତ କମିଳେ;
  ତାଳ ମୋ ନୟନ ନୀର
ପୟୁର ଯୁଗଳ ଭଖାଳ, ତୁମୁର
  ଅଳଗି କହନ୍ତି ଗୀର—

"ଏ ଯେ ଶିଶୁଗଣ ଚାଲୁଛ ସେନେହେ
ଚରଣ ପ୍ରତିମା ପରି,
ତେହୁଁଟି ଅଧିକ ନ ମଣିବ ତମାରେ
ହୃଦୟ ଆଦରେ ଧରି ।
ତାଙ୍କ ଭୁଲେ ଅବା ନିରେଖି ସ୍ୱଭ୍ରମେ
ରହି ମୁଁ ପାରିବ କ୍ଷଣେ,
ତୁମର ଏ ଯେଉଁ ଅତନ୍ଦ୍ରା ମୂରତି
ଖେଳେ ନିତି ଏ ନୟନେ ।
ଦଅ, ଦେବ, ମାଗେ ଚଳିଲିଣି ଆଜ ମୁଁ
କରୁଛି ଶ୍ରୀପଦେ ଅଳି;
ଛିଣ୍ଡାଇ ଏ ସ୍ନେହ ଡୋରିଗାଟି, ଯାଏ
ନିମିଷକ ଅପସରି ।

## ଘାସ ପଡ଼ିଆରେ

ଯାଉଥିଲି ଶ୍ୟାମଳ-ଘାସ, ମନୀର ବନ୍ଧନେ
କେତେ ପରି ଖେଳୁଛୁ ନର ମୃଦୁ ଆଳାପନେ ।
ଗଗନେ ଶିଖର ଟେକି ଏ ଯେ ତରୁବର,
ତାହାଙ୍କୁ ସମ୍ଭବେ କିବା ନ ଦେଖାନ୍ତୁ ନିକର !
ମୁହିଁ କମା ବସି ଏଥି ତବ ସ୍ନିଗ୍ଧ ଉରସେ
ଭାଙ୍ଗିବି ଏ ନାଚ ଖେଳ ନିର୍ଦ୍ଦୟ ପରଶେ ?

କେତେ ମୋ ଏକାନ୍ତ ଜନ ହୃଦୟୁ ହଜାଇ
ନିତାନ୍ତ ଧରନ୍ତି ମୋରେ ସ୍ନେହ ସନମାନେ;
ଦୂରେ ଯାଇବ, ଗୃହେ ବନେ, ଦେଶେ ପରବାସେ
ଏ ବଣ୍ଟ, ସମ୍ପଦେ ଆତ୍ମା ପୁଣ୍ୟ ପ୍ରତିମା ସେ !
ମୁଁ ସେ ନିତ୍ୟ ହୃଦୁ ମୋର ଉଦାସ ବେଶରେ
ଫିକାଇ ଦେଉଛି ତାଙ୍କୁ ଚଳ ଧୂଳି ପରେ ।
ମାଙ୍ଗି ଦିଅ, ମାଙ୍ଗି ଦିଅ, ହେ ସଖା ସୋଦର;
ଏ ପାଷାଣ ଘରେ କମ୍ପା କରୁଛ ଅନ୍ତର ?

ଆତ୍ମା, ଧାମଶିଖା, ଆଜ ମୋ ହୃଦ ବସାରେ
ବସାଇ ପାରନ୍ତି ତୋରେ ସୋଦର ବେଶରେ !
ଯେତା ଲାଗି ଯେବେନ୍ତି ବୁକେ ସମୀର ପରଶ,
ସେତା ନିତ୍ୟ ସ୍ପନ୍ଦନ ମୋର ଜୀବନ ଆଦର୍ଶ ।
ତେବେ ଯିନା କେଉଁ ମୁହିଁ ପାରନ୍ତି ଜୀବନେ
ବସାଇବା ଏଣେ ହୃଦ କନକ ଆସନେ ।

## ବୁଝୁ ହେଲଣି ଏବେ

କେତେ ତ ବସିଲି ମୁହିଁ, ନ ଆସିଲୁ ବାହୁଡ଼ି;
ନିମିଷେ ନୟନୁ ମୋର କାହିଁ ଗଲୁ ରେ ଉଡ଼ି ।
କ ସମ୍ପଦ ଅବା ମୁହିଁ ଦେଇଥାଆନ୍ତି ତୋତେ,
ତୁ ତ ଆସି ମାଗୁଥିଲୁ ମୁଠେ ପ୍ରେମଜଳ ମୋଠେ ?
କେତେ ବେଳ ଠିଆହେଲୁ ମୁହିଁ ଫେରବେ ଅତି,
ଶୁଣା ହେଲନାହିଁ ତୋର ହୃଦ ଗୂଢ଼ ଭାରତି ।

ହସି ଖେଳି ଘର ମଧ୍ୟେ ଯେତେ ଘରର ଜନ
ସୁଖେ ଦିନ ନେଉଥାନ୍ତି କେଡ଼େ ହରଷ ମନ ।
କିଏ ଠିଆ ହୋଇଥିଲା ଏକା ଏହି ଦୁଆରେ,
ଭିକ୍ଷା ଡାଲି ଧରି ଭିକ୍ଷା ମାଗିଥିଲା କାତରେ ।
ସେହୁ ଆହା ନିଜ ଘରେ ଯଦି ଥାଆନ୍ତା ରହି,
କିବା ସୁଖୀ ସଉଭାଗୀ ହୋଇ ନ ଥାନ୍ତା ତହିଁ ।
ପିଅର କନକ କୋଳେ ବସି ଉଦିତ ପ୍ରାଣେ,
ସରଗ କିଏ କି ନୋହିଥାନ୍ତା ମରତ ଧାମେ ?
ଏକୁ ବଳି ହସ ଖେଳେ ପୂର କୁଟୀର ଆଜି,
ଖେଳୁ କି ଥାନ୍ତେ ସୁଖେ ଦୁଃଖୁ ହୃମନ ଭାଜି ?

ଆଜି ଆହା ଶୂନ୍ୟ ହୃଦେ ହୋଇ ଠିଆଛି ଏଥି,
ଭଲି ଅବଶେଷେ କାହିଁ ଗଲୁ ନିବିଶା ନେଇଛି ।
ପ୍ରିତ ହାଦ ଶବଦେ ଯେ ଫୁଟି ଉଠିଲା ଆଶା,
ପ୍ରିତ ଦୂର ବାଣୀ ପ୍ରାଣେ ଦେଲା ନବ ଭରସା;
ଯେତେ ବା ଉଦାସ ଡାକ ଯହିଁ ଶୁଣିଲି ଶ୍ରବଣେ,
ତହିଁ ତହିଁ ଦାହିଁ ଦାହିଁ ବୁଲୁ ଚହିଲା ମନେ ।
ଏହି ଭାବେ କେତେ କାଳ ନେଇ ଚନ୍ଦନେ ବହିଁ
ଶିରେ ବଡ଼ାଇ ଦେବା ମୁଠେ ନିଉଳ ମାଇଁ,
କହିଲୁ, 'ହେ ବାବୁ, ମୋତେ ମିଳି ମୁଠିଏ ଯାଉ';
ଅଧେ କହି, ରହିଲା ତୋ ମୁଖେ ଅଧିକ ଆଉ ।
ତରତରେ ନେଇ ଗୋଡ଼େ, ଆହା କି ଭଲି କରି,
ଏହି ହାତେ ଠାର ଯାହା ପାଣ୍ଡୁ କଲି ମୋ ଦୂର !

ଚନ୍ଦେ ଦେଲେ ବାଣୀ ଆଉ ନାହିଁ ବଦନୁଁ ଖସି,
ପାଦେ ପୁଣି ଛୁଉଁ ହୋଇ ନାହିଁ ଭକ୍ଷା ପ୍ରତ୍ୟାଶୀ ।
ଜମିଲେ ନୟନୁ ମୋର ହୋଇଗଲୁ ଅନ୍ତର;
ନାହିଁ ମୁହିଁ, ମୁହିଁବା ମୋ ଏବେ ହୋଇଛୁ ସାର ।
ତୋ ଦର୍ଶନ ଭୁବୁକ୍ଷୁ ମୁଁ ଏବେ ହେଲିଣି ଏବେ,
ବଞ୍ଚି କି ରହିବ ସତେ ତୋତେ ନ ଦେଖି ନେନେ ?

## ମହା ଅନ୍ୱେଷଣେ

[ସତ୍ୟବାଦୀ ବଦ୍ୟାଳୟରେ ବଉଳ ଓ ବୁରଅନା ଗଛ ଗ୍ରାଇରେ ଶୀତ ଋତୁରୁ ଆରମ୍ଭ କରି ଗ୍ରୀଷ୍ମ ଶେଷପର୍ଯ୍ୟନ୍ତ ପଢ଼ା ହୁଏ । ଗ୍ରୀଷ୍ମାବକାଶ ପରେ ମଧ୍ୟ ବର୍ଷା ହେବା ପୂର୍ବରୁ କେତେ ସମୟ ସେହିଠାରେ ପଢ଼ା ଚାଲେ । ବଦ୍ୟାଳୟର ପ୍ରତିଷ୍ଠାତା ପଣ୍ଡିତ ଗୋପବନ୍ଧୁ ଦାସ ସେଠାରେ ନୂତନ ଧରଣରେ ଶିକ୍ଷାଦାନର ପରିକଳ୍ପନା କରିଥିଲେ । ତାଙ୍କ ଲକ୍ଷ୍ୟ ଥିଲା ସେଠାରୁ ଯେଉଁ ଛାତ୍ରମାନେ ଉତ୍ତୀର୍ଣ୍ଣ ହୋଇ ବାହାରିବେ, ସେମାନେ ଚାକରି କରିବାକୁ ଇଚ୍ଛା ନ କରି, ଦେଶ ଓ ସମାଜର ସେବାରେ ଜୀବନ ଦେବେ । ତାହା ହେଲେ ଲକ୍ଷ ଲକ୍ଷ ମୂକ ଲୋକଙ୍କର ପାଟି ଫିଟିବ, ଦେଶରେ ଦରିଦ୍ରତା ଘୁଞ୍ଚିବ ଓ ସ୍ୱାଧୀନତାଲାଭ ସମ୍ଭବ ହେବ ।

ଜଗାନ୍ତ ପ୍ରଭାତେ ପଡ଼ି ବଉଳର ଧାରା,
ପାଣି ଡେଙ୍କ ପୂଟଉଛି ଏ କାନନ ସାରା ।
ଜାଉର ନସ ପରିଣତ କୁଞ୍ଜ ତରୁ ତଳ
ଆନ ରୂପ ଆଜ ସାଜୁଥିବ କି ଜଂକର;

ଟପ ଟପ ଡାଳପତ୍ରୁ ପଡୁଥିବ ପାଣି,
ତରୁ ଶାଖେ ଶୁଭୁନ ଥିବ କାକ ପିକ ବାଣୀ;
ସମୀର ଶୀକର ସିକ୍ତ ହର ଫୁଲ ବାସ,
ନ ବହୁଥିବ ତ ବନ୍ଧୁ ପାନ୍ଥ ଜନ ପାଶ;
ଥୁରୁ ଥୁରୁ ଥରୁଥିବେ କାନନ ନିବାସୀ
ସାପ ବେଙ୍ଗ ଶିବା ଶଶା, ମାଡ଼ୁ ମାନେ ପଶି;
ପାଣି ପଙ୍କେ ଗୋଳ ହୋଇ କୁଞ୍ଜ ଭୂମିତଳ,
ପଚ ପଚ ପାଦେ ହେଉଥିବ ଅବିରଳ;
କାଇ ଜନ୍ଦା ବୁଲି ବୁଲି ଖୋଜୁଥିବେ ସୁଖେ
ପଥିକ କୋମଳ ପାଦ ଚୁମ୍ବିବାକୁ ମୁଖେ ।

ଏ ସମୟେ କାହିଁ, ବାବୁ, ଯାଉଅଛ ଏକା;
ନିଭର ଏ ବନଦେଶ ପତ୍ରାକୁଞ୍ଜ ଗୁଢ଼ ?
ବସିବା ଆସନ ବନେ ପଥର ଯୁଗଳ
ଓଦା ହୋଇ ରହିଥାନ୍ତି ନରଷ ଅନ୍ତରେ
ନ ଥିଲୁଁ ନଥାଇବା ସ୍ଥାନ, କଷ୍ଟ ଆବରଣେ
ସଡ଼ା ପୋଥିପାକ ସବେ ଧରନ୍ତି ଯତନେ ।
ଟପଟପ ପାଣି ଟୋପା ତରୁ ଡାଳୁ ଆସି
ତନ୍ଦ୍ରାଳ ଥାଆନ୍ତା ଧୀରେ ପ୍ରଭୁ ଅନ୍ତର୍ଯ୍ୟାମୀ
ତଥାପି କାତର ନାହିଁ ହୁଅନ୍ତ କେ ପ୍ରାଣେ,
ବିଦ୍ୟାର୍ଜନ ଲାଗି ପଡ଼ି ଆସିଛ ଏ ସ୍ଥାନେ !
ମୁଁ ଜଡ଼ ଜୀବନ ଧାଇଁ ତୁମ ମେଳେ ରହି,
ସହଜେ ଯାଆନ୍ତୁ ଯେତେ ଦୁଃଖ କ୍ଳେଶ ସହି ।

ବିଦ୍ୟା ବିନା ମଧ୍ୟ ସୁଖେ ମିଳନ୍ତା ଏ ଜୀବେ,
ଜଣୁ ଜଣେ ଯେଣୁ ବିଦ୍ୟା ପ୍ରତ୍ୟାଶୀ ସରବେ ।

ତା ମଧ୍ୟେ ଆସିଲେ ଝାଟେଣ ବରଷି ଅସରା,
ଅଲଂଘ୍ୟ ଥରନ୍ତା ଶିକ୍ଷା କାନନ ପସରା ।
କେତେ କେ କରନ୍ତି ଅଳି ଛୁଟିଲଗି କୋଳେ,
ଲୁଚି! ଓଦା ହେବା କଷ୍ଟ, ବାନ୍ଧି ପୋଥି ତୋଡେ ।
କେତେ କାହା ଦେହେ ତାପ ବଢ଼ିବା ବାହାନା
କରୁଥାନ୍ତି, ଜଣୁ ଜଣେ ବୁଦ୍ଧିରେ ଶିଆଣା ।
ତାବତା କରନ୍ତି କାନ ଭୁଲାଇ ଭୁଲାଇ
ସାରା ବରଷର ଆଦ୍ୟ ବର୍ଷା ଛୁଟି ପାଇଁ ।

ତୁମେ ଯେ ଯାଉନ୍ତ ଗ୍ରୀଷ୍ମ ଅବସର ପାଇ,
କେତେ ଦିନ ରହିବ କି ବିଦ୍ୟାଳୟ ଛାଡ଼ି ?
ସାରବଣି ବୁଲି ଗାଆଁ ବିଲ ପଦା ବନେ,
ବାପା ବୋଉ ସ୍ନେହ କେତେ ଘେନିବଣି ମନେ ।
ପକ୍ଷେ ନ ବିତୁଣୁ ମନେ ଆସିବ ତ ଫେରି;
ଗୃହୁଁ ଦିନ ବିତିଯିବ, ଆଉ କେତେ ଡେରି ?
ତୁମେ ଯେ ଶିକ୍ଷାର୍ଥୀ; ଗୁରୁ ଦେବେ ପୁଣି ଶିକ୍ଷା,
ଭୂଗୋଳ ସାହିତ୍ୟ ଅଂକ ଇତିହାସେ ଦୀକ୍ଷା ।
ଶୋଧାଇବେ ଲଗି କେତେ ପରଜନ ଭିକ୍ଷା,
ଯା ଲଗି ମରାଣେ ବହି ଅନନ୍ତ ପିପାସା ।
ପରାଧୀନତାର ଏହା ଏକ ମହା ଚିହ୍ନ,
ସ୍ୱାଧୀନ ଭାରତେ ଲକ୍ଷ୍ୟ ହୋଇଥାନ୍ତା ଭିନ୍ନ ।

ପରୀକ୍ଷା ସକାଶେ ପର ଲୋଡ଼ା ଏତେ ପାଠ,
ପାଠ ବହି ଜୀବନର ଉପଯୋଗୀ ଶାଠ ।
ସବୁ ବୃନ୍ଦ ବିଦ୍ୟାଳୟୁ ଗ୍ରୁପ ପାଇଁ,
ସେ ଗୁଣ ବିଦ୍ଭୁନେ କାର୍ଯ୍ୟ ଜୀବନେ ତ ନାହିଁ ।

ତୁମେ ମାଟି, ଆମେ ସବୁ ... କୁମ୍ଭକାର;
ଯାଉ ତୁମେ ଗଢ଼ି ହାତେ କେତେ ପଣ୍ୟ ଭାର ।
ବଢ଼େ ସେ ମୂର୍ତ୍ତି ହବା ନଶି ମୁଣ୍ଡ ଝାଳେ,
ବିକା ହୁଏ ସ୍ୱଳ୍ପ ମୂଲ୍ୟେ କେତେ କାହା ଦ୍ୱାରେ ।
ଏହାହି ହୋଇଛି ଆଜ ଶିକ୍ଷାର ପଦ୍ଧତି,
ଏଥିପାଇଁ ଦେଶସାରା ଉତ୍କଣ୍ଠିତ ଅତି ।
ଏଥିପାଇଁ ଗୁରୁବର୍ଗ ଗଢ଼ନ୍ତୁ ଜୀବନ;
ଏ ଅଟେ ଚରମ ଲକ୍ଷ୍ୟ, ଅସାଧ୍ୟ ସାଧନ ।
ମନୁଷ୍ୟ ଗଢ଼ିବା ନୁହେ ଈପ୍ସିତ କାହାର;
ସେ ଅଟେ କଠିନ କାର୍ଯ୍ୟ, ଯୋଗୀ ଯାନ୍ତ୍ର ହାର ।

ଯାହାଙ୍କ କଳ୍ପନା ଏହି ବନ ବିଦ୍ୟାଳୟ,
ସେ ଲୋଡ଼ନ୍ତୁ ଜ୍ଞାନୀ ଯଶ ବୃଦ୍ଧି ଜୀବ ଚୟ,
ଲୋକହିତେ ଯେହୁ ହେଳେ ଉତ୍ସର୍ଗିବେ ପ୍ରାଣ,
ଜଗତ କଲ୍ୟାଣେ ତାଙ୍କ ସର୍ବଶ୍ରେଷ୍ଠ ଦାନ ।
ଜନ୍ମଭୂମି ପାଦତଳେ ଅଛୁ ଯେ ଗୌରବେ,
ସେ ମାତେ ସନ୍ତାନ ମୁଣ୍ଡ ଜନନୀ ଗରବେ ।
ଏହାପରେ ଶତ ମୁଣ୍ଡ ସୃଜନ ସକାଶେ
ଗୁରୁ ଶିଷ୍ୟ ମେଳ ଏହି ପୁଣ୍ୟ ଶିକ୍ଷାବାସେ ।

ଏ ଶିକ୍ଷା ଉଦ୍ଦେଶ୍ୟ, ବାବୁ, ଅର୍ପିଛି ପରାଣ,
ଏଥିପାଇଁ ଏକା ଯେତେ ବିଦ୍ୟା ବୁଦ୍ଧି ଜ୍ଞାନ ।
ଗୁରୁ ଚଢ଼ପାରେ ଭ୍ରମେ, ଶିଷ୍ୟ ବା ବିପଥେ;
ତଥାପି ରହିବନ୍ତି ଲକ୍ଷ୍ୟ ଉଭେ ଅନ୍ତରତେ ।
ସେ ଲକ୍ଷ୍ୟ ବୁଝିବା ମିନା ନୁହଇ କଠିନ;
ସାଧିବାଟା ବଡ଼, ଲୋଡ଼େ ସାଧନା ଅସୀମ ।
ସତ୍ୟଯୁଗୁ କଳି ଯାଏ, ଅନନ୍ତ ସମସ୍ତ
ସେ ସାଧନାପଥ ନର ଖୋଜୁଛନ୍ତି ନିଶ୍ଚସ୍ତ ।
ଖୋଜେ ମୁହିଁ ଏବା ସତେ ହଜିବାର ଧନ,
ଏକ ମହା ଅନ୍ୱେଷଣେ ଗଢ଼ା ଏ ଜୀବନ ।

## ସରସ୍ୱତୀ ପୂଜା

[କଲିକତାରେ ଶିକ୍ଷକତା ଶିକ୍ଷା କରୁଥିବା ବେଳେ କବି ପଦ୍ୟଟି ଲେଖିଥିଲେ । ଶ୍ରୀପଞ୍ଚମୀ ପୂଜା ସତ୍ୟବାଦୀ ବନ ବିଦ୍ୟାଳୟର ଏକ ପ୍ରଧାନ ବାର୍ଷିକ ଉତ୍ସବ ଥିଲା । ଏଥିରେ ସୂଚିତ 'ମିତ' କବିଙ୍କର ପ୍ରଧାନ ବାଲ୍ୟସଖା । ପରେ କବି ତାଙ୍କ ଭଉଣୀଙ୍କୁ ବିବାହ କଲେ । ସେ ଯୌବନ ବୟସରୁ ଲକ୍ଷ୍ୟଭ୍ରଷ୍ଟ ହୋଇ, ପୈତୃକ ସମ୍ପତ୍ତି ନଷ୍ଟ କରି, ଦରିଦ୍ର ହୋଇପଡ଼ିଲେ । ବର୍ତ୍ତମାନ ସେ ଇହ ଜଗତରେ ନାହାନ୍ତି । କଲିକତା ସହରରେ ଅନେକ ପାଳିତ କୋଇଲି ଅଛନ୍ତି । ସେମାନେ ବସନ୍ତଋତୁ ଆସିବା ପୂର୍ବରୁ ଓ ବର୍ଷାଋତୁରେ ଅନେକ ଦିନ ପର୍ଯ୍ୟନ୍ତ ରାବନ୍ତି; ଏପରି କି, ବିଜୁଳି ଆଲୋକରେ ରାତିରେ ସୁଦ୍ଧା ରାବୁଥାନ୍ତି । ସାଳିଆ କବିଙ୍କ ଜନ୍ମସ୍ଥାନର ନଦୀ ।]

ଉଇଁଆସ ବେଗେ, ତପନ, ଘୂରୁ କନକ ଥାଳି;
ସିଞ୍ଚିଦିଅ, ଉଷା କୁହେଳି, ବନ୍ଦୁ ସରଗ ବାଟ ।

ଆସ ହେ ତରୁଣ, ମଳୟ, ହେମ ଚରଣେ ବନ୍ଦ;
ଡାକବଣ, ପିକ, ପୀୟୂଷ ମୌଧ ପିଞ୍ଜରେ ରନ୍ଧ୍ର ।
ଯାହାନ୍ତି ସୋହାଗ ରଜନୀ, ଆଣି ଫୁଲକନ୍ଦରେ
ଏ ଜଗା ଅମୃତ ଅଞ୍ଚଥି ପର ମେଦିନୀ ତଳେ ।
ନୂ ଶ୍ରୀପଞ୍ଚମୀ ଜଗତେ, କେନ୍ଦ୍ରେ ହରଷେ ଆଜ
ପୁଟନ୍ତି ନଟିଳ ଶ୍ରବଣ, ବକ୍ଷ ହୃଦପୁରାଜ ।
ଗାଅ ଗାଅ ହୃଷ୍ଟେ, ବାଳକେ, ବିଦ୍ୟାନିକେତବାସି,
ଗଣୋଦାଣି ବାଣୀ ବନ୍ଦନା ହୃଦ କମଳୁଁ ଭାସି;
ମାଆ ସରସ୍ୱତୀ ମୋହନ ମୂର୍ତ୍ତି ନୟନେ ଥାପି,
ପୂଜା ଆରାଧନ ସାଧନେ ଦିଅ ଦିନଟି ଯାପି ।
ଚରଣ ଅର୍ଚ୍ଚନା ପ୍ରବାସେ ନହି ଉଦାସେ ଥିତ,
ଭୁଲ ମେଲେ ଆଜ ଭେଟିବ ଯାହା ନଲୋଡ଼ଇ ନିତ ।

ବନ୍ଧୁ, ଦୂରେ ଦେଶେ ଆସିଛି ମୋର କନକ ପୁରୀ,
ଜୀବନ ଦୁର୍ଲଭ ସମ୍ପଦ, ହୃଦ ନିସର୍ଗ ଶିରୀ ।
ସଣାଚାଣି ମୂର୍ତ୍ତି ନିବେଦି ବଟ ଶ୍ୟାମଳ ତଳେ,
ମୋ ପ୍ରାଣ ପସରା ସେତେକ ଥିବେ ପୁଲକ ଭରେ;
ଗାଉଥିବେ ସ୍ତୁତି ବନ୍ଦନା ସ୍ନିଗ୍ଧ ଅଧରୁ ଫେଣ,
ଡଳୁ ଜୋଳେ ପିକ ପଞ୍ଚମେ ମୋଦେ ମିଶାଇ ଦେଇ;
ବକୁଳ ତମାଳ ଶିଖରୁ ଝଡ଼ି କନକ ଫୁଲ,
ତଳ ଧୂଳି ଦୂରେ କରୁଥିବ ପରାଗପୁର;
ତଥିପରେ ଛୁଟି ପିଲାଏ ଗୁରୁ ଚରଣ ପୁଟେ,
ବାଣୀ ଆରାଧନେ ପରଣ ତାଳ ହୃଷ୍ଟ ସବାରେ,

ସେ ବନ ନିକୁଞ୍ଜ ସମ୍ପଦେ ହୋଇଥିବେ ତ ଜଣେ,
ଗୋଟି ଗୋଟି ହେମ କମଳ ଫୁଟାଚାଣି ଚରଣେ;
ନାଚ ରଙ୍ଗ ଖେଳ କୌତୁକ, ପୂତ ମାର୍ଜନ ଚାଳ,
କେତେ ଧନ ଯହିଁ ହୃଦ ମୁଁ ଢାଳି ଅଛଇଁ ମୋର;
ସବୁ ଆହା ହୁଡୁ ବସୋରିଁ, ଅଛି ଏଠାବେ ରହି,
କୁଞ୍ଜ, ବାବୁ, ସେତେ ସମ୍ପଦ ମନ ଉଧବେ ତହିଁ ।

ବାଲ୍ୟର ସରଳ ଅନ୍ତରେ—ମନୁ ଯିବ କି ମୋର ?
ଭୁଲୁଥିଲି ଧନେ ବଜନେ ସୁଖେ ଆଦରି ଫୁଲ;
ମ୍ଳାହାନ ସାରିଲେ ଚୃଙ୍ଗବ ବାଣୀ ଚପୁର ଚଇ,
ଉଭା ହେବ ହସ ହରଷେ ଜେନା ଫୁଲ ଗୃଙ୍ଗଡ଼ା;
ଏକେ ଆନେ ସଖା ମେଳାପେ ଫୁଲ ସମ୍ପଦ ନେଇ,
ଗୁରୁଙ୍କ ନୟନ ଉଡ଼ାଲେ ଦେବ ଚରକେ ଗୁହିଁ ।
ଏବେ ସିନା ସବୁ ତୁଚ୍ଛତ ହୁଏ ସାମାନ୍ୟ ଚଣ,
ପ୍ରକୃତିର ମୂଲ୍ୟ ଶୈଶବେ କିଏ ପାରିବ କଳି ?
ଆସନ୍ନ ଭବିଷ୍ୟ କଳ୍ପନା ଦେଖି ସ୍ୱପ୍ନେ ଅଙ୍କିତ,
ଧରିବାକୁ କର ବଢ଼ାଉଥିଲି, ସରସ ଚିତ୍ର ।
ଟେକିଦେଲେ ମିଛ ଉଦାସେ ବନ୍ଧ ଉପରୁ ମୋତେ,
ଚଢ଼ ମାଟି ଫଙ୍କେ ତନୁ ମୋ କ୍ଷତ ହୋଇଲା କେତେ ।
ଗୋଟିଏ ତ ଚହ୍ନ ଅଦ୍ୟାପି ଅଛି ଏ ଅଙ୍ଗେ ରହି,
ବାଲ୍ୟର ବୟସ ବିଭବ ଜର ଦଇନେ ବହି ।
ସେଠେ ଟେବଲେ ଯହିଁ ଅନାଏଁ ଏହି ଗାରଟି ମୋର,
କେତେ ଗତ କଥା ସୁମରି, ପୂରିଆସେ ଅନ୍ତର ।

ଯାହିଁ ଆଜ କେତେ ଦୂରେ ସେ ମିତ ଅଛନ୍ତି ରହି;
ଚରଣୁ ଚରଣେ ଲୋଟିବା ଲଭେ ହୁଏ ମୋ ନାହିଁ ।
ଆନ ଭାବେ ହୃଦ ତାଙ୍କର ପୂଜିଗଲାଣି ଏବେ;
ଆଉ କି ଜୀବନେ ନମିବେ ପୋଟରେ ଲୋଡ଼ିବେ ଭେଟେ ?
କେତେ ତ ସମ୍ପଦ ଝୁଲାଇଅଛି ଜୀବନେ ମୋର;
ସେ ସଙ୍ଗତେ କାହେ କଣ୍ଠେ କରିପାରିବ ଭୁଲ ?

ଗୃହାଳି ପିଲାଙ୍କ ମେଳାପେ ପୂଜା ଧୁଳିକେ ସାରି,
ଶ୍ରୀଫଳ ଗୋଟାଇ ଯିବାର ଶତ ଚରଣେ ଗୃଳି ।
ସାଳିଆ ଅଳପ ମଳିଳେ ଦେଇ ଶ୍ରୀଫଳ ଚୋତି,
ସକଳତ ଶେଷେ ଅଣ୍ଟାଳି ଯାଉଥିବାର ଲୋଟି ।
କୋଟି ନିଧି ଲଭୁଁ ଅଧିକ ମୋହି ନିଦନ ହାସେ,
ଶ୍ରୀଫଳ ଗୋଟାଇ ଝୋଲିବା ଉଭା ଗୁରୁଙ୍କ ପାଶେ ।
ଗାଆଁରୁ ଗାଆଁକୁ ସନ୍ଧର ବାଣୀ ବନ୍ଦନା ଗାଇ,
ପଞ୍ଚମୀ ସ୍ୱଦାକ ମାଗିବା ସ୍ନେହ ସୋହାଗ ପାଇ ।

ଆହା ସେ ଯେ ଗୁରୁ; ଚରଣେ ପ୍ରିୟ ସମ୍ପଦ ଆଜି,
ସେ ଶିଶୁ ସଙ୍ଗାତ ମେଳାପେ ଠିକ ହୃଦୟୁ ରାଜି !
ବାରେକ ଜୀବନେ ଯଦିବା ପାଇପାରନ୍ତି ଫେରି,
କେତେ ସାଙ୍ଗ ସାଥି ସଙ୍ଗତେ ଅଙ୍କି ଆସନ୍ତି ଧରି;
କେତେ ଯେ ବାଳୁତ ସଭବ ଜରା ଦଳିବ ମୋର
ସେ ସୁଧା ସାଳିଆ ସଳିଳୁ ଆଣି କରନ୍ତି ଠୁଳ ।

ଗାଅ ଗାଅ ଧୂଳେ, ପିଲାଏ, ଦୂରି ଏ ଦୂର ପୁରୀ,
ବାଅ ଏବେ ବାଣୀ ବଦନେ ହୃଦ ଭକତି ଭରି ।

ଆସ, ରେ ତରୁଣ ମଳୟ, ରଙ୍ଗ ତରଙ୍ଗ ବନ୍ଧି;
ଡାଳଦିଅ, ପିକ, ପୀୟୂଷ ସୌଧ ପିଞ୍ଜରେ ରନ୍ଧି;
ଉଡ଼ିଆସ ବେଗେ, ତପନ, ସ୍ୱର୍ଣ୍ଣ କନକେ ଢାଳି,
ସିଞ୍ଚିଦିଅ, ଉଷା କୁନ୍ତଳ, ଇନ୍ଦୁ ଧରଣୀ ବାରି ।

ତୁମେ ସବୁ ବାନ୍ଧି ଜଗତେ ମଧୁ ସମ୍ଭାରେ ଭବ;
ସଜାଇ ରଖୁଛ ହରଷେ ସଦା ଏ ସାରା ଭବ ।
ସେ ଯୋଗେ ସମୀପ ଦୂରରେ ଭେଦ ହୁଅଇ ଦୂର;
ବାରହୁଏ ନାହିଁ କେ ପକ୍ଷୀ, କେବା ଅମୃତ ଧୂର ।
ତଥାଁ ମୋ ଅନ୍ତର ସମ୍ପଦ ଏଥି ପାଶେ ବେଗି,
ଯେ ଦୂରେ ରହିବା ଭାଗ୍ୟେ ମୋ ଅଛି ବିଧାତା ଲେଖି ।

## ପତ୍ନୀ

[କବି ନିଜ ଗ୍ରାମରେ ପଢ଼ଣା ଘରେ ବିବାହ ହୋଇଥିଲେ । ପିଲା-ଦିନେ ସେ ଓ ତାଙ୍କ ଭାବୀ ପତ୍ନୀ ଏକାଠି ଖେଳୁଥିଲେ ଓ ଭାଇ ଭଉଣୀ ପରି ଚଳୁଥିଲେ । ପରେ କବି ତାଙ୍କ ଗ୍ରାମରେ ଏକା ଛାଡ଼ି, ଲୋକସେବା କରିବା ସମ୍ପର୍କରେ ଅନେକ କାଳ ପ୍ରବାସରେ କଟାଇଲେ । କବିଙ୍କ ପିତାମାତା ଅଳ୍ପ ବୟସରେ ମଲେ ଯିବାରେ ପତ୍ନୀଙ୍କୁ ଏକା ରହିବାକୁ ପଡ଼ିଲା ।

ବନ୍ଧୁ ଦିନ କଥା, ଦେବି, ପଡ଼ଇ କି ମନେ,
ବନମାଳିକେ ଭୁଲିବାର ବଳ ହେବା କେନେ ?
ନଈ ନାଳେ ମଖଳି ସୁଖେ ବରଷା ଆସାରେ
ବାଲି ବନ୍ଧ ଦେଉଥିବା ନିର୍ଝରଣୀ ଧାରେ ।

କଆ କେତକୀର ବର୍ଣ୍ଣ ତୋଳ ଆଣି ଫୁଲ,
ଏକ ଆନ ଗଳେ ନେଇ ପିନ୍ଧାଇବା ମାଳ ?
କଣ୍ଟା ଖୁଞ୍ଚ ଲାଗି ଆହା ମୃଦୁ ଅଚଘନେ,
କେତେ ନିର୍ଯାତନ ବାଧି ନ ଥିବ ପରାଣେ !
କପଟ ସେ ସହୁଥିଲା, କେଡ଼େ ମୁଁ ନିଠୁର,
କୋମଳ ଲବଣୀ ବଳି ଦେଖି କଳେବର ?
ଚଢ଼ି ବାଡ଼ି ସରୋବର ଘାଟ ବରଡାଳେ,
କେତେ ଲାଗୁଥିଲେ ଡାଳମାଙ୍କୁଡ଼ି ଖେଳାରେ !

ଯେତେ ଭଲ ମନ୍ଦ ଯାହା ଏ ମୋର ଜୀବନେ,
ତୁମେ ତ ସେ ପ୍ରକୃତିରେ ହୋଇଛ ଗୋ ଜଣେ ।
ସଂଜ ବେଳେ ପିଲା ମେଳେ ଖେଳ ଲୁଚକାଳି,
ଚୋର ବୋଲି ଏକ ଆନେ ହୁଏ ଧରାଧରି ।
ବାଡ଼ି ପଟେ ଗୁଇତଳେ ଧୂଳି ଖେଳେ ମାତି,
ସକାଳ ସ୍ନାହାନ ବେଳ ହୋଇଆସେ ରାତି ।
ବୋଉ ଆସି କୋଳେ ଧରି ନିଅନ୍ତ ବଦନ
ଏକ ବୃନ୍ତେ ଫୁଟିବେ ଯେ ଯୁଗଳ ସୁମନ ।
ଅଧର ଅଧରେ ଚୁମ୍ବି ଧୀରେ ମୋ କପୋଳେ,
ଆନ ଅଧେ ପରଶନ୍ତ ତୁମ ଗଣ୍ଡ ଥଳେ ।

କେତେ ଦିନ କେତେ ପରି ପିଲା କଉତୁକେ
ସାଙ୍ଗ ସାଥି ମେଳ ହୋଇ ଖେଳିବାରେ ସୁଖେ,
ବର ମୁହିଁ, କନ୍ୟା ତୁମେ ହୁଏ ଥରେ ଥରେ;
ଦମ୍ପତି କଳହ କେବେ ଲାଗିଯାଏ ଛଳେ ।

ଏକା ଠାଁବେ ଖିଆ ପିଆ, ନିଶୀଥ ଶୟନ,
ଏକ ଶେଯେ ଦେଖିବାର ଶୈଶବ ସପନ ।

ମନେ ଅଛି, ଦିନକର ମାଡ଼ଆସି ବଢ଼ି,
ଗାଆଁ ଦାଣ୍ଡ ଗୋଟିଯାକ ଯାଇଥିଲା ବୁଡ଼ି ।
କେତେ ପିଲା ଖେଳୁଥିଲେ ବାଲୁକା ପରାଣେ
ହସି ନାଚ କଉତୁକେ ବାଳୁତ ଭସାଣେ ।
ଖସି ଗୋଡ଼, ଅଯତନେ ଗଡ଼ିଗଲି ମୁହିଁ;
ମାଣିକ ପଡ଼ିଲ ଝରେ ତୁମେ ତହୁଁ ଡେଇଁ ।
ଧରିଦେଲ ହାତ ମୋର ଯେହ୍ନେ ହାତ ରୂଢ଼ି,
ଆଣୁ ଏ ପାଣିରେ ମୁଁ କି ଯାଉଥିଲି ବୁଡ଼ି ?
ଉଠେବଇ ଝୁଟେବଇ ହେଲ ପଡ଼ି ନିଜେ ମିନା;
ତେବେ ମୋତେ ଟେକିଲ ତ ନିଜ ରକ୍ଷା ବିନା ।
ଏତେ ଦୟା ସେନେହ ଗୋ କାହିଁ ଅଭାଜନେ
ବାଳୁତ ବୟସୁ ପୋଷି ରଖିଛ ଜୀବନେ ?

ଏ ଭାବେ ଯିବାରେ ଶିଶୁ କୋମଳ ବୟସ,
ଆସିଗଲା ନୂଆ ଭାବ ଘେନି ନବ ରସ ।
କି ମନ୍ତ୍ର ପଢ଼ିଲା କିଏ ଆସି କାନେ କାନେ,
ବେନି ଜନେ ଦୂରୁ ଦୂରେ ରଖିଲା ବିଧାନେ ।
ଏକ ଆନେ ଲୁଚି ଲୁଚି ହେଲେଁ ବେନି ତନୁ;
ସେ ସୁଧା ସ୍ମୃତିଟି ଆସ୍ୱା ଯିବାର କି ମନୁ ?

ନଈ କୂଳେ ଗଛ ମୂଳେ ଛପି ସଂଗୋପନେ,
ଙ୍କଡେ ଅନାଇବାର ଯାଇ ଏକେ ଆନେ ।
ଏକ ଆନ ରୂପ ଗୁଣ ପରମୁଖେ ଶୁଣି,
ସରମେ ବଦନ ପୋଡି ହୋଇଯିବା ଭୁନି ।
ତେବେ ନହେଲେ, ଆଜି ଆଉ ଶୁଣିବା ବାସନା;
ହୃଦୟୁ ଭବିଷ୍ୟ ପଷ୍ଠେ କେତେ କଳପନା ।
ପରିହାସୀ ଜନ ଆଗେ ହସ କଉତୁକେ
ଏକ ଆନ ନାମ ଭ୍ରମେ ନ ଧରିବା ମୁଖେ ।
ଏକ ଆନ ତୁଲେ ଥିବା ଶ୍ରଦ୍ଧା ପରିଚୟୁ
ବଚନେ ଯେ କାଟିଦେବା—କେଡ଼େ ନିରଦୟ !
ଏତେ ଏତେ କଥାମାନ ପଡଇ କି ମନେ,
ଆଜି ଯେ ରହିଛ, ଦେବ, ଏ ନବ ଜୀବନେ ?

ରହ ହୃଦେ, ପୁଣ୍ୟମୟି, ମୋ କୁଟୀର ନିଧି,
ଦମ୍ପତି ଜୀବନେ ପୁଣ୍ୟ ସାଧନାର ସିଦ୍ଧି ।
କି ଶିଖି ପରଶେ ମୋର ଫୁଟ ଏ ଅବସ୍ଥା,
ଯାହା ତୁମ ସେନେହେ ଗୋ ଦେଇ ନାହିଁ, ଧନ ?
ନୟନେ ଦେଇଛ ମୋର ସୁଧା ଦରଶନ,
ଶ୍ରବଣ ଯୁଗଳ ମଧୁ ବିପଞ୍ଚୀ ନିସ୍ୱନ,
ହୃଦୟେ ଯେ ଭରିଦେଲ ସେନେହ ମମତା,
ପରାଣେ ରୋପିଲ ଆଶା ସଉରଭ ଲତା ।
କିବା ଦେଲି ପ୍ରତିଦାନେ ମୁଁ ନିଠୁର ଜନ ?
ଯେତେ ଦୋଷି ଅନାଦର ଭୁଲ ଗୋ ବହନ ।

ତୁମ ଦେବା ଦାନେ ତୁମେ ବଶ, ମହାରାଣୀ,
ଜଗତ ଭଣ୍ଡାର ଭରା ଧନ ରତ୍ନେ ମାଣ୍ଠି ।
ରହ ସୁଖେ, ସୀମନ୍ତନ, କୁଂଠୀର ଆବର;
ଏତେ ଏତେ କଥା ମନୁ ନ ଦେବ ବସୋର ।

## ଗମିବ ସରଗ ଭୁଇଁ

ମୁଁ ତ ବୁଲୁଥିଲି ବଜନ ବପିନେ
ବାଁଉବଣା ହୋଇ ବାସେ;
ତୁମେ କଏ ଆସି କେଉଁ ନକ୍ଲୁଂଜୁ ହେ
ଠିଆ ହୋଇଗଲ ପାଶେ ।
ଚହ୍ନି ନ ପାରଲି ବଦନ ତୁମର,
ନୂଆ ଉପାଦାନେ ଭରା;
ତଗଣେ ମଣିଲି, ମୋ ପାଇଁ ବଧାତା
ଚଡ଼ିଛୁ ତୁମକୁ ପରା ।
କବା ଯେ କହଲ, ନ ବୁଝିଲି ଭଷା,
ମାରବେ ରହଲି ଚ୍ହିଁ;
ତ୍ରନ୍ତ ପନ୍ତୁ ଦୋଳେ ଚଳା ହୃଦେ ମୋକ
ତଡ଼ତ ପ୍ରବାହ ବହ ।

ହସ ହସେ, ସଖା, ପାଂହା ଆଣି ଦେଲ,
ଧୋନାଳ ଅନ୍ତର ଭରା;
ଇଚ୍ଛିଲି, ଜୀବନପାକ ବାଁଉବଣା
ହୁଅନ୍ତ ମୁଁ ଏହପର ।

ଏତେ ଦୟା ଯେବେ ଅପଚେତତରେ,
ଚୀରନ୍ତି ରଚିବା ଭ୍ରମ;
ମରମ କାନ୍ତାରେ ଫୁଟିଲେ ଏ ଫୁଲ,
ସରଗୁଁ ନଂଚ କ ଘ୍ରାନ ?
ଏ ରାଜଜ ଯୋଗ୍ୟ ନୁହଇ ମୁଁ, ବନ୍ଧୁ,
ବାହୁଡ଼ିଯାଉଛି ଏବେ;
ଯା ଦେଲ ବହୁତ, ଦେବ ନାହିଁ କିଛି
ଆଉ ମୋ ସ୍ମୃତିକ ଭବେ ।
ମଧ୍ୟାହ୍ନି ହ୍ରଦେ, ଜଳ ସ୍ଥଳ ନଭେ
ଓଟିଳ ଶୋଭା ସୁଖ ନାହିଁ;
ତୁମେ ଯେଉଁ ବନ୍ଧେ ଲଭିଛ ଜନମ,
କ ଅବା ଅପୂର୍ବ ତହିଁ ?

ରହ, ବନ୍ଧୁ, ରହ ଏ ମଧୁ ନିକୁଂଜେ
ଦିବସ ଯାମିନୀ ନିତି,
ନୟନ ତରଙ୍ଗେ ସିଞ୍ଚୁଥାଇ ବନ୍ଦେ,
ସେନେହ ସୁଧା ଚୀରନ୍ତି ।
ବିଜନ ବନେ ମୁଁ, ବାନ୍ଧି ବିତାନେ
ବସା ହୋଇଥିବ ଯହିଁ,
ତୁମ ଦୂର ସ୍ମୃତି ସୁମରି, ବନ୍ଧୁହେ,
ଗମିବ ସରଗ ଭୂଇଁ ।

## - ଅକାମାବୋଇ

ଯିଏ ସଙ୍ଗୀ ଅଛ, ଆସ ହେ ତୁରିତେ
ସାଂଗ ସାଥି ସୋଦର ସଂଗତେ;
ବାଳକ ବାଳିକାଗଣ,
କରି ମନ ଉନମନ,
ଶେଷ ତେଜି ଆସ ଉଠି
ନ ଟାଙ୍ଗିଯାଉଣୁ ରାତି;
ଯେତେ ତୁମେ ହୁବା ଯଉବନା,
ଅବର ପ୍ରଉଢ଼ ପୁଣି;
ଅନ୍ତଃପୁରେ ସୁରନାରୀ ରହିଛ ଯେ ଲୁଚି,
ଆସ ଆଜେ ସେହି ସଙ୍ଗେ ଜୁଟି;
ରାତି ପାହି ତ ଯାଉଛି ।

ଆସ ଯିବା ନଈ କୂଳେ
ତୁମେ ମୁଁ ସରବେ ମେଳେ;
ଭୁଲିବେ ସ୍ନାହାନ ପାଠ, ବସିବା ନକର ।
ଟୋପି ଟୋପି ଟୋପି ହୋଇ,
ଯାଉଥିବ ନୀର ବହି,
କଜଳ ଲୁଲୁଳ ଧାରା ତେଜ ଅଧରଳ ।
ବଦନର ଦର ହାସ
ଗାଉଥିବ ପରକାଶ;
ନୟନ ଚପଳା ପୁଣି ଯାଉଥିବ ଖେଳି ।

ଜଳ ଝାନ୍ଦୁ ପରଶନେ
ଆହା ଶୋଷ୍ଣ କ ବଦନେ;
ମନ୍ଦ ଶୀତେ ଧୀରେ ଅଙ୍ଗ ଆସୁଥିବ ଥର ।

ପାହାନ୍ତ ମୋହନେ ପୂବ୍ର ଚଗନ୍ଁ
କନକ କଣିକା ଢାଳୁଥିବ ଘନ୍;
ପ୍ରଷ୍ଫୁଟୀ ଶଇଳ ସଳଜେ ପରଶି,
ବଦାପୂ ବଷେସ ହସୁଥିବ ଶଶୀ;
କୁଆ ଟିଆଙ୍କର ଉଷା ଗୀତ ଧାର
ଡାଳେ ଡାଳେ କାହିଁ ଢଳୁଥିବ ପର;
ସଂଗ ଚେକବାକୁ ନିମିଷ ମାତର
ସେ ସ୍ୱର ନିଜନେ ହେଉଥିବ ଡର ।
ବୋଇତୁଁ ବୋଇଚେ ଝାପ ଜାଳଦେଇ,
ସୁଖେ ସୁଏ ଦେବା ସକଳ ଭସାଇ ।
କଳ କଳ କଲେ ଗାଇ କେତେ ଚଶ,
ତର ତରେ ନଈ ଯାଉଥିବ ଢଳ ।
ପଲ୍ଲୀ ନୂଆ ବୋହୂମାନେ,
ଲାଜ ମନ ସନମାନେ,
ପଣତ କାନରେ ମୁହଁ ଯତନେ ଘୋଡ଼ାଇ,
ହୁଳହୁଳ ପକାଇବେ ଭୁହାଇ ଭୁହାଇ ।

ଝାର ତରୁ ଡାଳୁ ଝଡ଼ ପଡ ଫୁଲ
ଭସିଯାଉଥିବ ସଂବେଗ ବତ୍ତୋଳ ।

ଅଧେ ଅଧେ ବୋଇତର ଆଲୁଅ ସେ ଶିଖା
ଦିଶିଯାଉଥିବ ପେଖ ଧୀରେ ଟଳି ଢଳି ।
ଦୂର ତୋଠୁଁ ଆଣୁଥିବ ବନ୍ଧୁ ସମୀରଣ
ଗୀତ ଛୁଳଛୁଳ କଥା—ଏକ ମିଶା ସ୍ୱନ ।
ତଥି ମଧ୍ୟେ ଆମ ଟିକି ବୋଇତଟି,
ଥରେ ନଇଁ ଥରେ ଲହରୀରେ ଉଠି,
ଏକର ପଛକୁ ଆନ,
ଘେନି ଜଳ କଳ ତାନ,
ନୃତ୍ୟ ବିନୋଦନେ ହର୍ଷି,
ଧୀରେ ଯାଉଥିବ ଭାସି ।
ଧାଡ଼ି ଧାଡ଼ି ହୋଇ ଏତେ ବୋଇତର ମାଳା
ନଈ ମଝିରେ କେଳି କରି ଦିଶୁଥିବେ ତୋରା ।
ଆହା କି ମଧୁର ଶିଖା
ମାର ଝାର ନଭ ଦୃଶ;
ଏକଇ ଆଲୋକେ ଆଜି ଆକାଶ ଅବନୀ;
ଜଳ ଗିରି ବନ ବାୟୁ ଏକ ବେଶେ ପୁଣି ।

ଯାଅ ଯାଅ ଭାସି, ରେ ବୋଇତ,
ସିନ୍ଧୁ ସଙ୍ଗେ ଭେଟ ତୋର ନୋହୁଛି ଯାବତ ।
ଜଳ ଦରପଣେ ବଦନ ଅନାଇଁ,
ଦୂରୁ ଦୂରେ ଯିବୁ, ବୋଇତ, ତୁ ଧାଇଁ;
ତରଙ୍ଗ ମଥାରେ ଉଠୁଥିବୁ ଥରେ,
ଥରେ ପୁଣି ନଇଁ ପଡ଼ୁଥିବୁ ତଳେ;
ଯେନ୍ତ ତୋ ସଙ୍ଗତେ ଅପର ବୋଇତ,
ସଭିଙ୍କି ତୁ ବଳି ଯିବୁ ରେ ତୁରିତ ।

ମୋ କର ଯୁଗଳକୁଁ ତୋରେ ଟେକି ଦେଇ ନେଲେ,
କହିଲ ସଖୀଙ୍କ ମେଳେ ସରସ ଅନ୍ତରେ;—
"ଅକା ମାଆ ବୋଇ,
ଗୁଆ ପାନ ଥୋଇ;
ଗୁଆ ପାନଟିକ ତୋର,
ମାସକ ଧରମ ମୋର ।"

ଏହାପରେ ଆସି ଏଥି ବରଷୁ ବରଷେ,
ଯାଇ ପଡ଼ଶୀଙ୍କ ମେଳେ,
ଏ ଛଟିମୀ କଲକଲେ,
ମୋ ବୋଇତ ଦେଉଥିବ ଭସାଇ ସରସେ ।
ଭ୍ରମି ଭ୍ରମି ସୁଖେ ସେ ବୋଇତ
ସିନ୍ଧୁ ସଂଗେ ଲଭୁଥିବ ଭେଟ ।

ନିଜେ ମୁହିଁ ସେ ସମ୍ପଦେ ନୋହିଲି ଭାଜନ,
ତହିଁ ଯେବେ ମୋ ହାତର
ଧାନ ସ୍ନାନ ଚନ୍ଦ ଫୁଲ,
ମୋ ହୃଦ ନିଃଶ୍ୱାସ ଧାରା
ବରଜ ସନ୍ତାପ ଭରା,
ବନ୍ଧର ପାରିବ କ୍ଷଣେ,
ଧନ୍ୟ ଯାତ୍ରା ବର୍ଣ୍ଣ ଧନେ;
ମୋ ନୟନୁଁ ବିନ୍ଦୁ ବାରି
ଚାରିଲା ଯେବେ ମୁଁ ଢାଳି,
ଲୋଡ଼ିବ ଜୀବନେ କିବା ଦୋସର ରତନ ?

ଯାଅ ଯାଅ ଏବେ ଛାଡ଼ି, ରେ ବୋଲନ୍ତ,
ଜଳ ଶୀତ ବୁକେ ଖେଳ ଅବିରତ ।
"ଏକା ମାଆ ବୋଇ,
ଗୁଆ ପାନ ଥୋଇ;
ଗୁଆ ପାନଟିକ ତୋର,
ମାସକ ଧରମ ମୋର ।"

## ପ୍ରବାସ ପ୍ରଭାତେ

[କବି ୧୯୧୯ ମସିହାରେ ନୂଆ ହୋଇ ସିଂହଭୂମ ଚକ୍ରଧରପୁର ଯାଇ ଏ ପଦ୍ୟ ଲେଖିଥିଲେ । ସତ୍ୟବାଦୀ ଛାଡ଼ି ନିର୍ଜନତା ବୋଧ କରୁଥିବାରୁ ସେ ଚକ୍ରଧରପୁରର ପ୍ରକୃତିର ଶୋଭା ଉପଭୋଗ କରିପାରୁ ନ ଥିଲେ । ତାଙ୍କ ସଂଗରେ ଗୋଟିଏ ଗଜାଡ଼ ପିଲା କାମଦାମ କରିବାକୁ ରହିଥିଲା । ତା ଘର ପୁରୀ ଜିଲ୍ଲାରେ । ସେ କବିଙ୍କ ପ୍ରକୃତି ଓ ମନୋଭାବ କିଛି କିଛି ବୁଝିଥିଲା ପରି ଜଣାଯାଏ । ପଦ୍ୟରେ ସୂଚିତ 'ବନ୍ଧୁ' ବୋଧହୁଏ ସତ୍ୟବାଦୀ ବିଦ୍ୟାଳୟର ଅନ୍ୟତମ କର୍ମୀ ପଣ୍ଡିତ ନୀଳକଣ୍ଠ ଦାସ । ତାଙ୍କ ସଙ୍ଗେ କବିଙ୍କର ପରେ ମନୋମାଳିନ୍ୟ ଘଟିଲେ ସୁଦ୍ଧା, ସତ୍ୟବାଦୀ ବିଦ୍ୟାଳୟରେ ଥିବା ବେଳେ ଉଭୟଙ୍କ ମଧ୍ୟରେ ଅତ୍ୟନ୍ତ ଘନିଷ୍ଠତା ଥିଲା । କବି ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ସତ୍ୟବାଦୀରୁ ଚକ୍ରଧରପୁର କର୍ମ ନିବାସନକୁ ଯାଇଥିଲେ । ସିଂହଭୂମରେ ସେ ଚାରି ବର୍ଷ ରହି ଅକ୍ଳାନ୍ତ ଚେଷ୍ଟା କରିଥିଲେ ।]

ଉପବନେ ଫୁଟିଅଛି ସହସ୍ର ସୁମନ,
ଗୁଣୁ ଗୁଣୁ ଗୁଞ୍ଜେ ଅଳି ବିହରେ କେସନ;
କନକ କେଶର ବାସ ଲେପିତ ପଦ୍ମରେ
ଶଂକତେ ବସଇ ଆସି ଫୁଲ କଳି ପରେ ।

କ କଥା ହୁଏ ସେ, ଥାପି ଅଧରେ ଅଧର
କେତ କାନେ ଶୁଣି ମୋରେ ନୋହିଲା ଗୋଚର ।
ସାୟାହ୍ନ ସମୀରେ ଯେବେ ମିଶଇ ମଧୁରେ
ଶଶାଂକ ମୃଦୁଳ କର ଉପବନ ଫୁଲେ,
କେମନ୍ତେ ଦେଖିବ, ଆହା, ଏକା ମୁଁ ଅନାଇଁ,
ତୁମ ନେତ୍ର ବେନି, ବନ୍ଧୁ, ଯେବେ ତହିଁ ନାହିଁ ?
ନିଶି ଉପହାରେ ତଳ ଛୁଇଁଅନା ଡାଳୁ
ନୂତନ ତଳପ ହିମ ଧବଳିତ ଗୁରୁ,
ମୃଦୁ ଆସ୍ତରଣେ ବନ୍ଧି ଉଷା ହେମ ଶିଖା,
ବାଢ଼ି ଛି କ କନକତ ରଜତ ମାଧୁରୀ !
କେତେ ତ ଶରଧା, ବଂଧୁ, ଥାଏ ଏ ସକଳେ;
ଉଦାସେ ତେଜିଲ କପାଁ ଆଜ ଦୂରୁ ଦୂରେ ?

"କ ବୁଝିବୁ, ପିଲ୍‌ଟି ରେ, ଉପବନ କଥି ?
ସେ ଆଖି ଲବେ କା ତୋତରେ ଦେଇଅଛୁ ବଧି ?
ଗଛଡାଳୁ ବାସି ଫୁଲ ଝଡ଼ଇ ମଉଳି,
ତଳେ ପଡ଼ି ଲେପେ ଅଂଗେ ତଳ ମାଟି ଧୂଳି ।
ଉଷାକାଳେ ରବି କର ଦିଶଇ ପାଟଳେ,
ତହୁଁ ମେ କଂଟତେ ତୋତରେ ଲଗିଥିବ ଭଲ ।
ଆଉ କମିକେ ଝଡ଼ି ହୋଇଗଲେ ଟାଣ,
ଶୁଖିଯିବ ତହିଁ ତଳେ ଯେତେ ଫୁଲପ୍ରାଣ ।
କ ଶୋଭା ମୁଁ ଦେଖିବ ରେ, ଡାକୁଅଛୁ ଏତେ ?
ବୟସେ ବାଳୁତ ତୁହି, ନ ବୁଝୁ କଂଟତେ ।

"ଏ ଯୁଗଳ ନେତ୍ର, ବାପ୍ପା, ମୋ ସାରା ଜୀବନ
କେତେ ତ ଦେଖିଛି ନବ ଋତୁ, ନବୋଦ୍ଭବନ ।
ଫୁଲଟିଏ ଡାଳୁ ଯେବେ ପଡ଼ଇ ଭୂତଳେ,
ଧୂଳି ବିଲେପିତ ତନୁ ଫେଇ ଅବହେଳେ
ନୟନ ବିଷାଦ ନୀର ଢାଳିଛି ନିରତେ—
'ସେ ଫୁଲ କି ଡାଳେ ପୁଣି ବିରାଜିବ ସତେ ?'
ସମୀର ହିଲ୍ଲୋଳ ଶୋଭା ହେରି ଉପବନେ,
କେତେ ଖେଳାଇଛି ହିଆ ମୃଦୁ ଆବର୍ତ୍ତନେ ।
ଶୁଣିଛି କୋକିଳ କଣ୍ଠୁ ସୁଧା ସ୍ନିଗ୍ଧ ବାଣୀ,
ଶୈବଳିନୀ ପ୍ରୀତି ଅର୍ଦ୍ଧ ଅବୋଧ କାହାଣୀ ।
ମୋତହୁଁ କି ବୁଝିବୁ ରେ ପ୍ରକୃତି ମାଧୁରୀ,
ଶିଳା ଶୁଷ୍କ ହୃଦ ବହି ଏ ବକ୍ଷେ ତୋହର ?
ଗୋଗୋଷ୍ଠ ଚରାଇ ବନ ବିଲ ପଦା ମାଳେ,
ଯାଅ, ଘରେ ଫେରିବୁ ରେ ଉଦାସ ଅନ୍ତରେ ।
ମାଳ ଗୁନ୍ଥି ଆଣିଥିବୁ କଅଁ ମାଳକଇଁ,
ଭାଇ ଭଉଣୀଙ୍କ ଗଳେ ଦେବୁ ରେ ଲମ୍ବାଇ ।
ନିଶା କୋଳେ ମୃଦୁ ନିଦେ ମୁଦ ତୋ ନୟନ,
ଗୋଠ ବଂଶୀସ୍ୱନ ଯାମେ ଦେଖିବୁ ସ୍ୱପନ ।
ଗଛଡ଼ାଳୁ ଫୁଲ ଯେବେ ପଡ଼ୁଛି ଭୂତଳେ,
ଦେଖିବ କି ନ ଦେଖିବ, ମୁଁ ଜାଣେଁ ଭଲେ ।

"ଏତେ ଏତେ ଶୋଭା ମୁହିଁ ଦେଖେ ଚଉପାଟେ,
ବସେ କପାଁ, ଜାଣୁ କି, ଏ ନୂର କାରାବାସେ ?

ତପନ କନକେ, କବା ବଧୂ ସୁଧା କରେ
ଏ ଘରୁ ବାହାର ନାହିଁ ଗୃହିଁବଏ ବାରେ ?
ସାଧି ଯାଉଅଛୁ ନିତ ପୁଲକିତ ମନେ
ଚରଣ ଦେବତା ପେଷିଛନ୍ତି ଯେ କରମେ ।
କର୍ମକୁ କରିଛୁ ପର ପ୍ରାଣର ପ୍ରତିମା;
ଦେଖୁନ୍ଥୁ କି ଆନ ଅଛି ମୋର କର୍ମ ବିନା ?
କର୍ମେ ମୁଁ କରିବ, ଜାଣୁ, ଏ ଅଂଗ ନିପାତ,
ସମ୍ପଦ ସୋହାଗ ଭୋଗେ ନ ବଢ଼ାଇ ହାତ ।
ମୋ ନେତ୍ର ଶ୍ରବଣ ନାସା ସକଳ ଜଗତେ
ଡେଇଅଛି ଅଯତନେ କେତେ ଦୂର ପଥେ ।
ଜୀବନେ ଯାବତ ନାହିଁ ପାଇବ ରେ ଫେରି,
କି ଶୋଭା ତୁ ଦେଖାଇଛୁ, ଦେଖିବି କପରି ?
ଦେଖି ଆସ ଯାଇ ତୁହି ନୟନେ ଆଦର,
ସେ ସଂପଦୁ ହୃଦେ ତୋର କରି ନେବ ଜୁର ।
ମୋ ପ୍ରାଣ-କୁଟୀର ଦ୍ୱାର ଫିଟିବ ଯେ କାଳେ,
କଣିକାଏ ଦେବୁ ଏହି ସେନେହ ସମ୍ଭାରେ ।"

କରି ଛଳ ଛଳ ଆଖି, ପାଣୁଁ ମୋ ପିଲାଟି
ମୃଦୁ ପଦକ୍ଷେପେ ଚଳି, ନ ଫିରାଇ ପାଟି ।
କହିଲା ମଉନେ କି ଯେ, ବୁଝି ନ ବୁଝିଲି,
ଗୂଢ଼ ନେତ୍ର ଧ୍ୟାନେ ଦେଖି କି ଅଙ୍କିତ ଲିପି ।
କେବେ ଆହା ହୃଦ ତୋଷେ ପାଇବ ଅନାଇ
ବିଶ୍ୱବ୍ୟାପ୍ତ ଧରା ବ୍ୟୋମ ସଂପଦ ସୋହାଇ ?

# ସଂଯୋଇ ତୀରେ ସକାଳେ

[ସଂଯୋଇ ଚନ୍ଦ୍ରଧରପୁରର ଗୋଟିଏ ଶ୍ରେଷ୍ଠ ଗିରିନଦୀ । ଚନ୍ଦ୍ରଧରପୁର ନିକଟରେ ପ୍ରାକୃତିକ ଶୋଭା ଅତି ଅଳ୍ପ ଅଛି । ଖରାଦିନେ ନିତାନ୍ତ ଅଧିକ ଗ୍ରୀଷ୍ମ ଓ ଶୀତଦିନେ ନିତାନ୍ତ ଅଧିକ ଶୀତ ହୁଏ । କବିଙ୍କ ପିଲାଦିନେ ତାଙ୍କ ବାପା, ମା, ଜେଜେମା, ଭଉଣୀ ଅଳ୍ପ ଅଳ୍ପ ଛନ୍ଦାରେ ମରିଗଲେ । ଏ ପଦ୍ୟରେ କବି ତାଙ୍କ ଜନ୍ମଭୂମି ବାଣପୁର ଓ ଯୌବନର ପ୍ରଥମ କର୍ମଭୂମି ସତ୍ୟବାଦୀ ସଙ୍ଗେ, ପରବର୍ତ୍ତୀ କର୍ମଭୂମି ଚନ୍ଦ୍ରଧରପୁରର ପାର୍ଥକ୍ୟ ଦେଖାଇଅଛନ୍ତି । ଚନ୍ଦ୍ରଧରପୁର ଅଞ୍ଚଳରେ ବସନ୍ତ ଋତୁରେ କୋଇଲି କ୍ୱଚିତ୍ ରାବଥାଏ । କବିଙ୍କ ଜନ୍ମ ସ୍ଥାନରେ ଶାଳିଆ ନଦୀକୂଳରେ ଘଣ୍ଟଶିଳା ପାହାଡ ଅବସ୍ଥିତ ।]

ଉଇଁବ ଭୁରତେ ତପନ ପ୍ରାଚୀ ଗଗନଭାଲେ,
ଦଶିଲିଣି କେତେ ତୋର ଏ ଊଷା କନକ ଜାଲେ ।
ଗୋଟି ଗୋଟି ତାର ନମିଷେ ଏକ ଆରେକେ ଦେଖି,
ଜୀବନ ମମତା କଂସାର ବୁଜିଦିଅନ୍ତି ଆଖି ।
ପୁଣି କେତେ ବେଳେ ଚାହିଁବେ ଆଉ ନୟନ ମେଲି,
ସଖା ସଙ୍ଗୀ ମେଳେ ସକଳେ ସୁଖେ କରିବେ କେଳି ।

ବନ୍ଧୁ, ରେ ସଂଯୋଇ ସଲିଳ, ଶିଳା ବନ୍ଧୁର ଶେଯେ,
ଏ କୃଶ ତନୁଟି ସେକିତେ ଧୀରେ ଆବରି ଲଜେ ।
ମୋ ପ୍ରାଣ ଅଶ୍ରୁତ କାକଳି ଶୀତ ସମୀରେ ବାହି,
ପ୍ରଚାରୁ ପ୍ରଚାରେ ଓହ୍ଲାଇ, ଯାଅ ଉଦାସେ ଧାଇଁ ।
ବାନ୍ଧିବି ନାହିଁ ମୁଁ ତୋ ସାଥେ ହୃଦ ମମତା-ଡୋର;
ପାହାନ୍ତ ସ୍ନାହାନ ସଂପାଦ, ଯିବ କୁଟୀରେ ଫେରି ।

ଦୂରେ ମୋ ରହୁଛୁ ସାଳଆ, ଆଦ୍ଧା ଚଢିମା ରାଣୀ,
ବନ୍ଧୁଥିବ ଭଲ ବନସ୍ତେ, ଭଣି ସୋହାଗ ବାଣୀ ।
କୁଳୁ କୁଳୁ କୁଳୁ କୌତୁକେ ଶିଳା ସିକତା ଡେଇଁ,
ଫୁଲ-କଳ ନୃତ୍ୟ ଛନ୍ଦେ ତା ଝର ନିକୁଞ୍ଜେ ରହି,
ଶଇଳୁଁ ଶଇଳ ଚରଣେ ଅବଗାହ ଲୁଧତେ,
ଖେଳଯାଉଥିବ ତରଳ ସୁଧା ଧାର ସତତେ ।

କେତେ ଦୂରେ ତେଜ ନଅରେ, ଆସି ରହୁଲ ଏଥି;
କେତେ ଊଷା ସଂଜ ଏଠାବେ ହାତ ଯାଉଛୁ ବଢ଼ି ।
ବାଳି ବନ୍ଧ ରଚ ସୈକତେ ଶିଶୁ ସେନେହ ଭରେ,
ଜଳସ୍ରୋତେ କେତେ କରଛୁ ଅଳା ବାଳୁତ ଖେଳେ ।
ଭାଂଗି ଦେଇ ଯାଇ ମୋ ବନ୍ଧ ପ୍ରୀତି ଜସ୍ୱ ଦ୍ରବାହେ,
ମିଶିଯାଏ ଆନ ସକାଳେ ସ୍ୱର୍ଣ୍ଣ ସୈକତ କାଧ୍ୟେ ।
ରହୁଥିବ ବୋଉ ବାଟ ମୋ—'ଧନ ଆସିବ ଫେରି,
କାହିଁ ବୁଲୁଥିବ ବନସ୍ତେ, କାନ୍ତ ନାହିଁ କ ଖର ?'
ଭାଳ ଏତେ ହୁଦେ, ଭୁରତେ ସ୍ନାନ ସମ୍ବାଦ ହେଲେ,
ଫେରିଯାଉଥିଲି କୁଟୀରେ ରବ ମଧ୍ୟାହ୍ନ ବେଳେ ।
'କାହିଁ ବୁଲୁଥିଲୁ, ବାବୁ ମୋ, ଏତେ ଉଚ୍ଛୁର ଯାଏ ?
ଶୁଖିଯାଇଅଛି ବଦନ ବାସି କରିଛି ପ୍ରାୟେ ।'
ଭଣି ମଧୁ ଭାଷେ ଜନନୀ, ଧୀରେ ଆଲିଙ୍ଗି ମୋରେ,
ବାଢ଼ି ଭାତ ହାତେ ଖୁଆନ୍ତି ସ୍ନେହ ବସାଇ କୋଳେ ।

ଚଉଦ ବରଷ ସରକ ହେଲା ଆଜକ ମୋର;
ନ ଶୁଣିଲି ଧନେ ଶ୍ରବଣେ ସେହି ସେନେହ ଗୀର ।

କେତେ ତ ଉତ୍ତର ନେଉଛି, ମୁହଁ ଯାଉଛି ଶୁଖି,
ନୋକେ ଶୋଷେ ହଂସା ଉଡ଼ୁଛି, ଫୁଟିଯାଉଛି ଆଖି ।
ଆହା ବୋଲିବାକୁ ହନେ ମୋ ଜଣେ କେହି ତ ନାହିଁ,
ହୁଡ଼ି ଏକା ମୋତେ ଏ ମର୍ତ୍ତ୍ୟ, ବୋଉ, ଗଲୁ ତୁ କାହିଁ ?
ଜୀବନୁ ଅଧିକ ଜୀବନେ ଥିଲୁ ମୋରେ ଟି କରି;
କପରି ରହିଲୁ ଏତେ ଦିନ ସୁଖ ଶରଧା ଭୁଲି ?

କୁଟୀର ନିବାସୀ ଯେତେ ଯେ ମୋର ସାଙ୍ଗଆ ଥିଲେ,
ଗୋଟି ଗୋଟି ହୋଇ ତୁରତେ ଧୂଳି ସରବେ ଗଲେ ।
ବରଷ ବରଷ ସାଧନା ସାଧି ନିଶି ଦିବସେ,
ଗୋଦାବରୀ ତୀରେ ନିମନ୍ତି ଦୂର ବିଦେଶ ବାସେ,
ଲଭିଥିଲେ ଯେହୁ ତନୟ, ପ୍ରାଣ ରମଣ ଶିଶୁ,
ନିମିଷକେ ବନ୍ଧ ନିଦେଶେ କାହିଁ ଗଲେ ସେ ଗୁଳି ।
ସଂତାନ ଭବିଷ୍ୟ ସଂପଦ ନାହିଁ ଦେଖିଲେ ହନେ;
ଶୋଇଲେ, ଚରିଣ ବାସନା ଜାଳ ଶ୍ମଶାନ ଭୂମେ ।

ମୋ ଜୀବନ ବୃନ୍ତ ଦୋପର ଧୂଳି କଳିକା ଗୋଟି
ବାଆ ପାଣି ଶୀତ ସମୀରେ ନାହିଁ ନ ଥିଲା ଫୁଟି ।
ମଧୁ ଋତୁ ଆସିଥାଆନ୍ତା, ପିକ କାକଳି ବହି;
ଫୁଟି କଳିକାଟି, ସମ୍ପୂର୍ଣ୍ଣ ଫୁଲ ଥାଆନ୍ତା ହୋଇ ।
କି କଲା ନିଠୁର ବିଧାତା, ଦେଲା ଛିଣ୍ଡାଇ ତାକୁ,
ଭୂତଳେ ମୃତ୍ତିକା ତଳେପେ ମିଶି ସଡ଼ି ଯିବାକୁ ।
ଫେଇ ମୁହିଁ ତହ କେଶର ଫୁଟିଉଠିଲା ପୁଣି,
ମୋ ପ୍ରାଣ ଅର୍ଦ୍ଧେକ ସୁମନ ଘ୍ରାଣୁ ଦେଇ ମେଲିଣି ।

କାହିଁ ଯାଇ, ମାଆ, ରହିଲ, କେଉଁ ସୁଦୂର ଦେଶେ;
ଶୟନ ସପନ ନ ଦେଲୁ ଦେଖା କାହିଁ ଦିବସେ ।
ଶ୍ମଶାନ ଚାଉଁଶ ଦେଖିଲେ ତୋରେ ପଡ଼ଇ ମନେ;
ସେ ତନୁ ମିଶାଇ ଦେଲୁ ଯା ଦୂର ଶ୍ମଶାନ ଭୂମେ !
ବିଦେଶ ଯିବାର ବେଳେ ମୋ କିଏ କରିବ ଅଳି;
ଦୁଆର ଅବୋର ବସିବ, 'ନାହିଁ ଛାଡ଼ିବ' ବୋଲି ?
ନ ମାନି, ମାଆ, ମୁଁ ଆସିଲି, ଛାଡ଼ି ଏକାଟି ଘରେ;
ଫେରି ପୁଣି ଭେଟ ନୋହିଲା ମର ଅବନୀ ତଳେ ।
ବସି ହେକଲ ପାଶେ ଥାଆନ୍ତି ଆଉ ନମିଷେ ମୁହିଁ,
ରୋଗଶଯ୍ୟାଗତ ଶିର ତୋ ଧୀରେ କୋଳେ ମୋ ଥୋଇ ।
ଦେଖିଥାନ୍ତି ପ୍ରାଣ ପବନଟିକ ଯିବାର ଉଡ଼ି,
କରଯୁଗେ ପୋଛି ଦଇନେ ତପ୍ତ ନୟନ ବାରି ।
'ଛେଡ଼ିଗଲୁ, ମାଆ, ଏକାଟି'—ଶେଷ ବିଦାୟ ବାଣୀ
କହିଥାନ୍ତି ଅଧ ଅଧରେ, ଅଧେ ହୋଇ ମୁଁ ଲୀନ ।

ପାଳିଥିଲେ ବୁଢ଼ୀ ମାଆଟି, କୋଳେ ସେନେହେ ଧରି,
ନୟନ ବନ୍ଧନେ ବରଚେ ତୋରେ ନୟନ କରି ।
ଛାଡ଼ିଗଲୁ ଦିନୁ ହୋଇଲେ ପ୍ରୀତି ଅନ୍ଧୁଣୀ ଅତି;
ତୋ କଥା ସକଳ ଝୁରି ଲେ ଗଲା ପରାଣ ଛୁଟି ।
ତୁ ପାଶେ ଥିଲେ, ମା, ଅବା ସେ ଆଉ ଅଧିକ ଦିନେ,
ଆୟୁଷ ରଜ୍ଜୁଟି ଓଟାରି, ରହିଥାଆନ୍ତେ ପ୍ରାଣେ ।
ତୋ ପଛେ ଛୁଟେ ଗଲେ ସେ ଶେଷ କୁଟୀର ବାସୀ,
'ରହ, ବାବୁ, ସୁଖ ସମ୍ପଦେ'—ସ୍ନେହ ଆଶିଷ ଭାଷି ।

ରହିବାର ମହୀମଣ୍ଡଳେ ଥିଲ କି ଆଉ ମୋର,
ସୁଖ ଶିଖା ମର ଜଗତେ ସବୁ କରାଇ ଦୂର ?
ଦିନୁ ଦିନ ତେଜି କୁଟୀର ହେଲି ବିପିନ ବାସୀ,
ବନ ମୃଗ ବ୍ୟାଘ୍ର ମେଳାପେ ନର ଜୀବନ ଖାସି ।
ବସି ମୁଁ ସାଲଆ ନିକଟେ ଖାଲିହୋଇଲି ନିତି,
ଉଦାସ ଶ୍ରବଣେ ଧରି ତା କଳ ତରଳ ଗୀତି ।
ବାଲି ବନ୍ଧେ ନାହିଁ ହୋଇଲ ସୁଖ ଶରଧା ତଳେ,
ଜଳସ୍ରୋତ କେଳି ରଖିଲି ତାକି ବିସ୍ମୃତ ଘରେ ।
ଘଂଟଶିଳା ଶିଳା ସଉଧ ଧୀର ମଳୟ ବାତେ
ଶଇଳ ସାୟାହ୍ନ ସମ୍ପଦ କଳ ନୋହିଲ ଚିତ୍ତ ।
ତରୁ ଡାଳେ ପିକ ସଙ୍ଗୀତେ, ବୃନ୍ତେ ଭ୍ରମର ଖେଳେ,
କିବା ସେ ହଜିଲ ପରାଏ ପ୍ରତେ ହୋଇଲ ମୋରେ ।
ତାଳି ନେସ୍ତୁମାର ନିରତେ, ମିତ୍ର କରଇ ଭୂମି;
ଅପ୍ସୁରୁଂ ଘାଟଣେ ଦୂଉର ନାଂ କି କଥା ଗୁଣି ।
ହୃଦ ଖେଦ ମୋର କେବେକ ନାହିଁ ବୁଝିଲ କେହି;
ଜୀବନେ ରହିଲା, ଯୌବନ ଜରା ଅନଳେ ଦହି ।
ଖୋଜି ହେଲି ବନ ପର୍ବତେ, ଧରା ଗଗନ ସାରା,
କାହିଁ ମୋ ହଜିଲ ସମ୍ପଦ ଦିନେ ମିଳିବ ପରା ।

କେତେ ଦିନେ ଆସି ଦେଖିଲି ଶ୍ୟାମ ନିକୁଞ୍ଜ ଭୂମି,
ଝୁରିଅନା ବଟ ବକୁଳ ତରୁ ମାଧୁରୀ ସେନ ।
ମଧୁ ପରବେଶ ଦିବସୁଁ ଶୀତ ସୀମାନ୍ତ ପାଏ
ମଧୁପ ଗୁଞ୍ଜିଲ କୁସୁମ ରଜ ଲେପିତ କାୟେ ।

ଡାକେ ଡାକେ ପିକ ବନ୍ଦରେ, ଢାଳି ପୀୟୂଷ ଧାର
ପଲ୍ଲବ ଶ୍ୟାମଳ ହିଲ୍ଲୋଳେ ଦକ୍ଷିଣ ସମୀର ଡୋର ।

ସେ କୁଞ୍ଜ କାନନ ନିବାସେ ବସି ବାଳୁର ସୁଖେ,
ନିସର୍ଗ ଅମୃତ ଉଦ୍‌ବେଳ ବକ୍ଷ କନକ ମୁଖେ,
ଜ୍ଞାନ ଭାବେ ନତ ବାଳକେ, ସଖା ସୋଦର ମିଳି,
ଗୁରୁ ସେବା ରତ ନିରତେ, ସ୍ନେହ ବାତ୍ସଲ୍ୟ ଶିଖି ।
ସେଥା ଚେନି ଉଷା ଉତ୍ତାଳେ କାକ ବନ୍ଧୁର ଡାକେ,
ସରସୀ ସଲିଳେ ରଶ୍ମି ତନୁ ଚଖୋଳି ସୁଖେ ।
ନିଶି ନିଚଳିତ ସ୍ୱପନ ସ୍ନିଗ୍ଧ ଚଳଚ ଡାକେ
ସଙ୍କୋଚ ପଥୁର ନିବେଶି ସ୍ନେହ କୁନ୍ଦୁଳ ଭାରେ,
ବିହରନ୍ତି କୁଞ୍ଜ ନିକୁଞ୍ଜେ କର୍ମ ସାଧନ ଲାଗି
ମରତ ମାନବ ସନ୍ତାନ, ସ୍ୱର୍ଗ ସମ୍ପଦ ଭାଗୀ ।
ନୟନେ ହେରନ୍ତି ଚୌଦିଗେ ଫୁଲ ମୋହନ ଖେଳେ,
ହୃଦୟେ ଭରନ୍ତି ସରାଗେ ପିକ କାକଳି ଗୀର ।
ଯୋଡ଼ି ଗୋଟି ଫୁଲ କବା ସେ ବୃନ୍ତ ଉହୁଳ ଶିରେ,
ସଥା ତୋଳି ପ୍ରୀତି ଆଳାପେ ପ୍ରତି ନିକୁଞ୍ଜ ତଳେ ।

ଗୁରୁ ଜନେ ବନ୍ଦିଥାଆନ୍ତୁ, ଛେଦ ସଂଶୟ ଦକା,
କରେ ଧରି ସ୍ନେହ ଲେପିତ ବେଦ ଶାସନା ଶାଖା;
ଟଳନ୍ତି ଯା ଅନ୍ତ ସଙ୍କୋଚ, ସ୍ନେହ ସ୍ନିଗ୍ଧ ହୃଦୟ,
ନୟନ ଇଙ୍ଗିତେ ନିରତେ ପାଳି ମନ୍ତ୍ରଣି ଚୟ ।
ଶୟନ ସପନ କରମେ, ଗ୍ରାମ କାନନ ସ୍ଥଳେ
ମୋ ଶିର କମ୍ପିତ ସୋଦର ମର ମେଦିନୀ ତଳେ ।

ଏତେ ଦୂରେ ମୁଁ ଯେ ରହିଲି, ଅଶ୍ରି ସ୍ୱଦେଶ ମାଟି;
ସେନେହ ଡୋରି କି ନଠୁରେ ଦେଲ ଅନ୍ତରୁ କାଟି ?

ଝଡନେ ଯେବେ ବନ୍ଧୁ ବାଧାନେ ଭେଟ ହୋଇବ ସାଙ୍ଗ,
ହୋ ହୋ ଶବ୍ଦ ହେବ ଦେଖିଲେ, ଅର୍ଦ୍ଧ ବସୋର ଦେଇ ।
ପିଲ୍ଲମାନେ କ୍ରୀଡ଼ା କରନ୍ତେ, ଠାରେ ପ୍ରଶ୍ନ ନୟନେ,
ପୁଛିବେ, 'ନବୀନ ଆସେ ପୁଣି ଏ କିଏ କେତେ ?'
ପରଶେ ପୂର୍ବ ମମତା ମନେ ପଡ଼ିବ ନାହିଁ;
ନିଦାଘେ ଲୁଚିବେ କରନ୍ତେ, ବାରେ ବଦନ ଚାହିଁ ।
ଘର ଘାଟେ ନାହିଁ ପାରିବ ଚିଣି ସ୍ନାହାନ ସୋହାଗ;
ଭୟେ ଭୟେ ଛନ୍ଦ୍ର ନେଇବି, ତନୁ ପଖାଳି ବେଗ ।
ଭୁଲିଥିବ ସେତେବେଳେ ମୁଁ, ସଖା ମୋହର ନେଲେ
ସନ୍ତରଣେ ଅଙ୍ଗ ଦେବାର ତାଳି ତରଳ ଜଳେ;
ଗ୍ରାମ ଲେଣ୍ଠି, ତେଜି ଜୀବନ ଆଶା ନିମେଷ ନ୍ୟୁ,
ଅଧ ବାଟୁ ଫେରି ଆସିବା ପ୍ରାଣ ଛୁଇଁଲି ପ୍ରାୟେ ।
ସବୁ ତ ହେଲା ମୋ ସ୍ୱପନ ଦୂର ପ୍ରବାସେ ଆଜି;
ଅଛି ବସୁରଣେ ବୁନ୍ଦିକୁ ସେ ମେ ସମ୍ପଦରାଜି ।

କହିଁ ତେବେ ଖାଲି ନେବ ମୁଁ ମିଳନ୍ତି କିଣି ଦିବସ ?
ସ୍ମୃତି ଥାପି ନିତି ପୂଜିବ ଏହି ବଦେଶ ଚାପ ।
ସଂଯୋଇ ଅବୋଧ ଗୀତିକା କର୍ଣ୍ଣେ ଭରିବ ନିତି,
ପ୍ରାନ୍ତର ଉପାନ୍ତେ ନେଇବି ଗିରି ଶିଖର ସାଥି;
ପିକ କଣ୍ଠ ତାନ ଅଧୀତ ଚୂତ ନିକୁଞ୍ଜ ଛାୟା,
ଶ୍ୟାମ ଶସ୍ୟ ଶାଳ ବନ୍ଧନ ବଲ୍ଲି ବିଶାଳ କାୟା,

କୁସୁମ କଳିକା ଭୂଷଣେ ଘନେ ଲତିକା ତନୁ,
କନକଭ କାନ୍ତ ନିଶୂନ୍ୟ ନଦୀ ସିକତା ରେଣୁ;
ଏସବୁ ସମ୍ପଦେ ନିରତେ ଦେବ ପରାଣ ଢାଳି,
ନିଶି ଶୀତେ ହ୍ରଦ ଥରାଇ, ଦିବା ତପନେ ଜାଳି ।

ଉଇଁ ଆସ ଏବେ, ତପନ, ପ୍ରାଚୀ ଗଗନ କୂଳେ,
ଜାଳି ବଳ ବନ ପ୍ରାନ୍ତର ତପ୍ତ କିରଣ ଜାଳେ;
ଏ କ୍ଷୀଣ ସରୋଜ ସଳିଳ ଧାରା ଶୁଖାଇ ସୁଖେ,
ପିପାସା ମାତକ ଢାଳିବ ନର ମାନବ ମୁଖେ ।
ବେଗେ ମୁହିଁ ସ୍ନାନ ସମାପ୍ତ, ଫେରି କୁଟୀରେ ମୋର,
ଆଶ୍ରା ନେବି ରବି ଅନଳ୍ପ, ନୋହୁ ଉତ୍ସୁର ନେଳ ।
ଝଞ୍ଜା ବାତେ ପତ୍ନେ ମିଟିବ, ରମ୍ଭା ଅସ୍ପୃଷ୍ଠ ପତ୍ର,
ବଦନ କାଳିମେ ଲେପିବ, ତାହେ ସ୍ପୃଷ୍ଟାଇ ନେତ୍ର ।
ତେବେ ହେଲେ, ଯେସନେ ନିଷାଦ ଶର ଟଙ୍କାର ଡରେ
ଦଳନ ସବାରେ କୁରଙ୍ଗ ଧାଏଁ ବନ୍ତ କୋଟରେ;
ଏଡ଼ି ନ ପାରିଲେ କି ହେବ ଛାର ନିଠୁର ମୁନ,
ସେ ତ ତାର ଜନ୍ମଭୂଇଁଟି, ଭବ ଆଶ୍ରୟ ସ୍ଥାନ;
ସେହି ଭଳି ସିବ ସୋହାରେ ମୋର ବସମ ମାଇଁ;
ବାଛି ସେ ଆବାସ ନେଇଛି, ତହିଁ ବଡ଼ ତ ନାହିଁ ।

# ନିଦାଘ ସରସୀ

ଶୁଖିଛି ମୋ ସାଗ୍ର ସ୍ୱମଳ ଜଳଧି,
   ଆତପେ ହୋଇଛି କ୍ଷୀଣ;
ବିଲ ଚଦାମାଳେ ମିଶି, ସେ ମୋ ତନୁଁ
   ଆଜ ଆହା କେଉଡ଼େ ସ୍ଥାନ !
ଜଳ ଦର୍ପଣେ ମୁକ୍ତା ପ୍ରତିଫଳେ
   ନହୁଇ ବଦନ ତାର
ରବି ହେମ କର ଅଲକ୍ଷ୍ୟ ପରଶେ
   ବିଯୋଗ ଜୀବନ ଭାର,
କମଳ କଳିଟି ବିକଶୁ ସେ ଥିଲ
   ଅବନୀ ଗଗନ ମୋହି,
ଜୀବନ ପ୍ରଭାତେ ଶତା ଡାଳତେ ତା
   ମଉନେ ଚଢ଼ିଛି ଶୋଇ ।
ବାଟର ବାଟୋଇ ବାଟେ ଗୁଳିଯାଏ
   ଉଦାସ ଚରଣେ ଆଜ;
ନିମିଷେ କି ଶଙ୍କେ ଭାଳେ ମୋ ବିଗତ
   ସୋହାଗ ସଂପଦରାଜ ?
କି ଅଛି ମୋର ସେ ପଖାଳିଦେବି ତା
   ଧୂଳି ବିଲେପିତ ପାଦ;
ମୋ ସୁଧା କଣିକା ଅରପି, ହରିବ
   ମନୁ ମନ ଅବସାଦ ?

ନିଶି ଶଶୀ ମିଳିତେ ହସନ୍ତେ ଯା କୋଳେ
ବଦନ ରଜତ ହାସେ
କୋଟି କଇଁ କଳି, ତା ତନୁ ଫୁଟନ୍ତି
ବନ କଣ୍ଟା ବୁଦା ଘାସେ ।
ଯେତେ ମୋ ସଂପଦ ସରନ୍ତି ସକଳ,
ଋତୁ ଆବର୍ତ୍ତନେ ଚାଲି;
ତ୍ୟକ୍ତ ଧନ ବେଶେ ନିଶି ଦିବା ନିତ
ପଡ଼ି ମୁଁ ହେଉଛି ଘାରି ।
ଜଳବେଣୀ ବକ୍ଷେ ସନ୍ତରନ୍ତେ ସୁଖେ
ଯହିଁ ଶତ ଜଳଚର,
ବିକଟ ନିନାଦେ ବୁଲନ୍ତି କ୍ଷୁଧାର୍ତ୍ତ
ଶ୍ୱାନ ଶୃଗାଳଙ୍କ ଦଳ ।
ଆଜ୍ କହିଁ ନଭେ, ନବୀନ ଜଳଦ,
ଢାଳୁଛି ସଲିଳ ଧାର;
ନିଠୁର ସେନେହେ ଡାକ୍ତାଉଛି ମିତେ
ଏ ତନୁ ତାପିତ ଭାବି ?
ଅଧେ ମୁଁ ଜଳୁଛି ଯେ ଗ୍ରୀଷ୍ମ ଆତପେ
ଜାଳି ଭସ୍ମ କରି ତହିଁ;
ନ ଭୁଲନ୍ତି ଆଜ ଘନ ବାରି ଧାର,
ତଟିନୀ ପ୍ରବାହ ବନ୍ଧ ।
ଗିରି ଶିଳା ଶିରେ ବରଷି ହରଷେ,
ମରୁ ସଇକତେ, ନଭ;
ମୋ ଭଳି ସହସ୍ର ନରେଖ ଆଶ୍ରିତେ
ଦେଲ କୋଟି ପରାଭବ ।

ଶୁଣି ଯେ ଯାଉଛୁ ମୋ ତନୁ ବଡାନ,
ନୈବେଦ୍ୟ ମୁଁ ପଡୁଛି ମରି;
ବଞ୍ଚି ପୁଣି ମର୍ତ୍ତ୍ୟ କାଢ଼ିବାକୁ ମୁହିଁ
ଲୋଡେ ତ ନ କରେ ଅଳି ।

## ଦେଖ ଏ ଶ୍ମଶାନ

[ କଲିକତା ସହରର କୌଣସି ଅଞ୍ଚଳରେ ଗୋଟିଏ ଖୁବ୍ ବଡ଼ ଗୋରସ୍ଥାନ ଅଛି । ସେଠାରେ ଅନେକ ସାହେବଙ୍କର କବର ରହିଛି । ତା ମଧ୍ୟରେ ନାନା ପ୍ରକାର ଫୁଲଗଛ ମଧ୍ୟ ଅଛି । ବିଲାତରେ ଶୀତ ଋତୁରେ ତୁଷାର ପଡ଼େ । ଏକ ସ୍ଥାନରେ ପର୍ବତ ଓ ବନ ମଧ୍ୟରେ ଅନେକ ଗୁଡ଼ିଏ ହ୍ରଦ ଏକତ୍ର ରହିଛି । ତାହା କବିମାନଙ୍କର ନିତାନ୍ତ ପ୍ରିୟସ୍ଥଳ । ]

କେତେ ବାଟ ଯାଏ ଏ ଯେ ରହିଅଛି ପଡ଼ି,
ଦୂର ପରେ ଦୂର, ହେବ କଳନା କି କରି ?
ଗୋଟି ଗୋଟି ଶୋଇଅଛ ନୀରବ ପରାଣେ,
ଜୀବନ ସାଧନା ସିଦ୍ଧି ବିଦେଶର ବିରାମେ ।

କିଏ କାହିଁ କେତେ ଦୂରେ ପୁର ଜନପଦେ
ଲଭିଥିଲ ଜନମ ହେ ଅସୀମ ସଂପଦେ ।
ଜନମଭୂଇଁର ଯେତେ ନଦୀ ବନ ଗିରି,
ଯେତେ ଅବା ଏ ମରତେ ସୁରଲୋକ ଶିରୀ,
ତୁମ ମେଳେ ହୋଇଥାନ୍ତେ ନନ୍ଦନ କାନନ;
ନମିତେ ଯେ ଦୁଃଖେ କେହି ନୋହିଲ ଭାଜନ ।

ଶିଶିର ସାୟାହ୍ନେ ପଲ୍ଲୀ ନିହାର ପ୍ରାନ୍ତରେ
ପରାଣ ପୁଲକେ ଆହା ଭୁଲି ନାହିଁ ଥରେ;
ବାରେକ ସ୍ୱଦେଶ ମାଟିର ଏ ଶସ୍ୟର ଡ଼ାଳ,
ଶୋକ ତାପ ଜୀବନର ନୋହିଲ ପଖାଳ;
କବି ମନ ମୋହି ସେହି ହ୍ରଦ ବନ ଦେଶେ
ବିଜନ ହେଲେ ବସି ନାହିଁ ପ୍ରତିବାସୀବେଶେ ।

କେବଳ ବିଦେଶେ ଆସି ରହିଲି ଜୀବନେ
ପରାଣ ଅପରିଚିତ ଏ ଦୂର ବିଜନେ ।
ସୋଦର ମେଳାପେ, ସୁଖେ ବାପା ମାଆ ଭୁଲେ
ଜୀବନର ସୁଖ ଶିଶୁ ଭୁଞ୍ଜି ଥାନ୍ତି ଭଲେ ।
ସବୁ ଆହା କି କାରଣେ ପଛକୁ ପକାଇ,
ଏ ଦୂର ପ୍ରବାସେ ଆହେ ଆସିଲି ପଳାଇ;
ତପନ ଜଳନ୍ତ ତାପେ ଜଳ ଅବିରଳ,
କପାଳୁ ପୋଛିବା ପାଇଁ ଶରମ ସଳିଳ;
ଭିଲେ ଯେ ବୁଝନ୍ତି ନାହିଁ ପରାଣର କଥା,
ସେହି ମେଳେ ଡାକିବାକୁ ସାରା ଜୀବନଟା !

ହୃଦୟୁ ସେନେହେ ଧାରି ଡାକ ଅବହେଳେ,
ଆଦରେ ସୋଦର ସୁଖେ ଭେଟନ୍ତେ ଅନ୍ତରେ
ଏ ଦେଶର କୋଟି କୋଟି କନକ ପ୍ରତିମା;
ବିଦେଶ ଯାତନା ଭିଲେ ନ ପଡ଼ନ୍ତା ଜଣା ।

କପାଳ କପଟ ଚାପେ ସଂପାଦ ଜୀବନ,
ଲଭେ କି ଦୁର୍ଦ୍ଦଶରୁ ଆଜି ଅଛି ଯେ ରତନ ?
ଶୋକେ ଜଳେ ଅବିରତ ପେଟ କୋଟି କୋଟି,
ସଳଖେ ନ ରହି ତଳେ ପଡ଼େ ମଥା ଲୋଟି,
ମାନବ ଉଦାର ପ୍ରୀତି ଶୁଖିଛି ଜୀବନ୍ତ,
ପଡ଼ି ଯାଇଅଛି କଳା ଶିଳାମନ୍ତ ତନ୍ ।
ଶାର୍ଦ୍ଦୂଳ କବଳ ଉପରେ ମୃଗଶିଶୁ ପ୍ରାୟେ
ରହନ୍ତି ଯେ କୋଟି ଜନେ ଥରହର କାୟେ;
ସେ କାୟେ କି ଅଛି ଆଜି ଦୁର୍ଦ୍ଦ ସିଂହାସନ,
ସ୍ନେହେ ସନ୍ଧି ବସାଇବେ ଲୋଡ଼ି ଜଣୁ ଜଣ ?
ହରାଇ ଦେଇଛୁ ମିଛେ ସରଗ ସମ୍ପଦ,
ବନ୍ଦି ଭ୍ରମେ ବିଜୟୀର ବଳଭଙ୍ଗ ମଦ ।

ଉଜ୍ଜ୍ୱଳ ବଦନ, ସେ ଯେ କନକ ଠାକୁର,
ନୟନ ଯୁଗଳେ ନୀଳ ଶୋଭା ପ୍ରତିଫଳ;
ବୀର ଗଉରବେ ପଥେ ଯାଉଥିବା ବେଳି
କାନନ କେଶରୀ ଉଗ୍ର ସଂପଦକୁ ବଳି,—
କେତେ କେତେ ଥର ଦୂରୁ ନିରେଖି ମୁଁ ନାହିଁ;
ସତୁ କି ହେବ ଜୀବନର ଏ ନିମିଷ ପାଇଁ ?

ମାଡ଼ିଦେଇ ଯାଉଛି ମୁଁ ମୃତ୍ତିକାର ତଳେ
ପାଦେ ମୋର ଅବହେଳେ ଅଭୟ ଅନ୍ତରେ ।
ଜୀବନେ ଥାଆନ୍ତି [illegible] ଗୋଟି ଗୋଟି ହୋଇ,
ଦିବା ଜାଗରଣେ, କିବା ସ୍ୱପ୍ନ କରେ ଶୋଇ,

କେତେ ଦୂରେ ଡରେ ଭୟେ ଥାଅନ୍ତି ମୁଁ ଏବେ,
ଏ ନିବିଡ଼ ଦେଶେ ପାଦ ନ ଦେବାଇ ଲବେ ।
"ଆସ, ବନ୍ଧୁ, ନୁହେ ଏଥି ରହିବା ଉଚିତ;
ଆମ ଲାଗି ପଡ଼ିଅଛି ଏ ଉଦାସ ପଥ ।
ଜୀବନ୍ତେ ଯାହାର ଯାକୁ ସେବଣ ବେଖିର,
ମରଣେ ନ କର ଆସେ ଅନାଦର ତାର ।"

ଫୁଟ, ରେ ଗୋଲାପ ମଲ୍ଲୀ କାଆଳୀ ମେବନ୍ଦ;
ବହିଆସ, ସମୀରଣ, ଧୀରେ କଡ଼ କଡ଼;
ଗଗନୁ ସରଗ ସୁଧା ଢାଳ, ରବି ଶଶି;
ଗାଅ ରେ ପୁଲକେ, ପିକ, ଡାଳୁ ଡାଳେ ବସି;
ଜୀବନ୍ତେ ବାରେକ ଯାହା ଦେଇନାହିଁ ଲୋଡ଼
ମରଣେ ସେ ମଧୁ ନିଧି ଦିଅ ଆଜ ଢାଳ ।
ରହ ହେ ପଗାଣ ସୁଖେ, ନର ନାଶ୍ୱରଣ;
ଆସ, ବନ୍ଧୁ, ଯିବା ଚଳି, ତେଜ ଏ ଶ୍ମଶାନ ।"

## ସାୟାହ୍ନେ

ସାୟାହ୍ନ ଗଗନ ପାଟଳ-ଭୂଷଣେ
ପ୍ରୀତି ପାଟଳିତ ଧରା,
ତରୁ ଲତା ଶ୍ୟାମ ତନୁ ପରଶନେ
ସ୍ୱର୍ଣ୍ଣ ସମ୍ପଦ ଏ ପରା !

ତାଳ ନାରିକେଳ ଶ୍ୟାମଳ କୁଞ୍ଜ
ଦୂର ଚକ୍ରବାଳ କୋଳେ,

ଅବନୀ ଆକାଶ ଅମର ସୀମାଟି
ଫେଡ଼ଇ ମେଦିନୀ ତଳେ ।

ବ୍ୟୋମ ଅଧ ପଥେ କଳା ମେଘଖଣ୍ଡି
ବାଡ଼ି ଅଂଶ ଲଘୁ ଭାର,
ପ୍ରଣତୀ କପାଳେ ଭସାଏ ପୁଳକେ
ଜାହ୍ନବୀ କନକ ଧାର ।

ଶୀତ ଶେଷ ତ୍ରାସେ ଖେଳଇ ଶଙ୍କିତେ
ମଳୟ ଦକ୍ଷିଣ ବାସ;
ତରୁ ଲତା ପତ୍ରେ ମଧୁ ହେମ କାନ୍ତି
ପାଇ ନାହିଁ ପରକାଶ ।

ଚୂତ ଡାଳେ ଡାଳେ ତରୁଣ ମୁକୁଳ
ଫେଇ ନାହିଁ ଫୁଲ ରେଣୁ;
ବଣ ବକୁଳ ଯେ ନବ ଋତୁ ବେଶ
ସଜାଡ଼ି ନାହାନ୍ତି ତନୁ ।

ଲୁଚି ବନପ୍ରିୟ ବଣପି ପ୍ରବାସେ
ମାଜୁଛି ବଂଶୀ ସ୍ୱର,
ଅବନୀ ଆକାଶେ ଢାଳିବ ପୀୟୂଷ,
ମୋହି ଯିବ ଚରାଚର ।

ବାହର 'ବାହୁଡ଼ାଇ ତରତର ପାଦେ
ଯାଉଛି ଧୂଳିକେ ଗୁଳି,
ସଞ୍ଜ ହୋଇଣୁ ସେ ଘରର ଘରଣୀ
ଭେଟିବ ତ୍ୱରିତେ ବୋଲି ।

ଗୋଗୋଷ୍ଠୁ ଗୋରୁଏ ଫେରନ୍ତି, ଧ୍ୟାନ
ବତ୍ସ ମୁଖ ଦେଖିବାରେ;
ହମ୍ବା ହମ୍ବା ରବ, ନ ପାରନ୍ତି ଚଳି
ସ୍ତନ ବଳମ୍ବିତ ଭରେ ।

ବନାନ୍ତ ଗଗନେ ପ୍ରତି ନାହିଁ କାହିଁ
ଗଗନ ଉଜ୍ଜ୍ୱଳ ଫୁଲ;
ଉଡ଼ନ୍ତି ଉଷତେ, ଅଙ୍ଗ ଚମ୍ପାମାନ
ଲଗାଇ ବନ୍ଧଗଙ୍କୁଳ । \

ଦେଖ ଦେଖ, ବନ୍ଧୁ, ପ୍ରତୀଚୀ ଗଗନ
ପାଟଳ କପାଳେ ତଳ,
କଳା ମେଘ ତଳେ ଜଏ ଏ ଚାହଁନ୍ତି—
କମଳ କନକ କଳ !

ରବ ହେମ ଶେଷେ ସାୟାହ୍ନ ତାମସେ
ନ ବୁଡ଼ିଯାଉଣୁ ଧର,
ତରତରେ ଯାଏ ଓହ୍ଲାଇ ଗଗନୁ,
ପାତାଳେ ପଶିବ ପର !

ଦେଖିବ କି ବାରେ ଆଉ ଏ ମାଧୁରୀ
ଦେଖୁଛ, ବନ୍ଧୁ, ଯା ଆଜ ?
ଜୀବନ ଅଯୂନେ ପାଇବ କି ଭେଟ,
ନତ ସଞ୍ଜୁ ସଞ୍ଜେ ଖୋଜ ?

ମିଶିଯିବ ଏବେ ଅବନୀ ଗଗନ,
　ଦଶମ-ଯାମିନୀ ବେଳ,
ତାମସ ଜଡ଼ିତ କୋଳେ ଏ ଆମର
　ମଙ୍ଗଳ ପ୍ରତିମା ଖେଳ ।

ତାଳ ନାରିକେଳ ହେବ ନାହିଁ ବାରି,
　ପଥ କି ବିପଥ ତଳେ;
କୁଟୀରେ କେମନେ ଫେରିବା, ବନ୍ଧୁ ହେ,
　ସନ୍ତରି ନିଶୀଥ ନୀରେ ?

ଭେଦି କି ଯିବା ଏ ଅନନ୍ତ ଆହ୍ୱାନ,
　ଏ ଦ୍ୟୁତି ତାରକା ଶିଖ ?
ବ୍ୟୋମ ପ୍ରାନ୍ତରେ ଏ କଳା ବଉଦଟି,
　ତଳେ ତାର ଅଗ୍ନିଗିରି ?

ମୋ ଖାଲି ଭାବୁଛି ଭୁରିତେ ଏ ଜୀବେ
　ଧୂର୍ଜଟି ଗଗନ ତଳେ,
ଜୀବନ ମରଣ ଏକଇ ତାମସେ
　ଲୁଚାଇ ଏ ଭକ୍ତଜନେ ।

ଯାଉଛି, ବନ୍ଧୁ, ମୁଁ, ଦିଅ ହେ ମେଲଣି;
　ଆଉ କି ପାରିବ ରହି ?
ନା ଡାକ ଏ ଦୂରୁ ଶୁଭୁଛି ସଙ୍କେତ,
　ବିଳମ୍ବ ନୁହଇ ସହି ।

ବନେ ବନେ ଏଥି ସଂଜେ ଏକା, ସଖା,
ଅନାଇଁ ବସିବ ଆସି;
ମେଲଣି ମାଗି ଯେ ଗଲ ଏ ଭୁବନେ,
ଅଙ୍କାରେ ଜୀବନ ଝାସି,

ମୋର ଯେବେ ତାର ପାଇବ ହେ ଦେଖ
ଏ କଳା ବଉଦ ତଳେ,
ଏ ଝଡ଼ ତ ସ୍ମୃତି ନିମିତେ ହୃଦୟେ
ଜାଗିବ ତ ପୁଣି ବଳେ ।

ବୁଡ଼ି ଯାଅ, ତାରା, ଭୁଇଁରେ ପାତାଳେ,
ଲୁଚିଇ ପ୍ରବାଳ ତନୁ,
ଦିବସ ଯାମିନୀ ତେଜ ତମ ଶିଖା-
ବଳେ ବଢ଼ୋଇ ମନୁ ।

ବର ଫୁଟିତେ ଏ ଚନ୍ଦ୍ର ବୃନ୍ତ କଳା
ନ ଫିଟୁ କୋଇଲି ଭାଷ;
ପାନ୍ଥଜନେ ଚଥେ ଚହଲୁ ଏ ଭବେ,
ଆଣି ଦୂର ପରବାସ ।

ପୁଣି ଯେତେବେଳେ ଦେଖିବେ ସୋହାଗେ
ଏ ତାରା ପ୍ରଭାତୀ ଭାଲେ,
ଯେ ଯାହା ସଂପଦ ଫେଇ ଉଭା ହେବେ
ମର ବସୁନ୍ଧର କୋଳେ ।

# ମଶବ ମୁଁ

ଆଣି ନବନର କଣ୍ଟ ନାହିଁ ଯେ କଳନା,
ତିମିରେ ଢବମ ଯାଏ ଗତି ପର ଜଣା;
ଘନ ଘନ କଳା ମେଘେ ଚମକେ ବିଜୁଳି,
ଘଡ଼ଘଡ଼ ଶୁଭେ ସିଂହ ଗରଜନ ବଳି ।
ଶୀତଳ ଶ୍ୟାମଳ ବୃଷ୍ଟି ଜଳଦ ଧାରାରେ
ଅବନୀ ଆକାଶ ସୀମା ବୁଝି ମୁଁ ନ ପାରେ;
ଚହଟି ରହିଅଛି ପାଣି ନଈ ନାଳ ଧରି,
ବାଟ ଘାଟ ଲବେ କାହିଁ ନ ହୁଅଇ ବାରି ।

ଏମନ ସମୟେ ମୁଁ ଯେ ଚଳଇ ଏକାକୀ;
କି ବିଶାଳ ଚଢ଼ଆ ସେ, ପାଉ ନାହିଁ ଆଖି !
ବରଷା ଆସାରେ ସବୁ ଲୁଚି ଦୂରେ ପାଶେ,
ବାଡ଼ ତରୁ ଗିରି ଦିଶେ ବିକଟ ବିକାଶେ ।
ମେଘ ପାଣି ପବନୁ ଆଶ୍ରା ନେବା ପାଇଁ ତଳେ
ଗଛ ମୂଳ ବଘ ତଳ ଖୋଜି ତ ନ ମିଳେ ।
ଏକଇ ଧିଆନେ ଧୀରେ ଚାଳଇ ମୁଁ ପାଦ,
ପ୍ରତି ପଦେ ଗଣୁଥାଏ ଶତ ପରମାଦ ।
ବାଟେ ଚାଲଇ ବା ଭ୍ରମେ ହୋଇଲିଣି ବଣା,
ନିମିଷେ ଚରଣ ତଳେ ନ ପଡ଼ଇ ଜଣା ।
ଜଣେ ହେଲେ ଥାଆନ୍ତା କେ ପ୍ରାଣୀ ବା ପାଦପ,
ପଚାରି ବୁଝନ୍ତି ପଥ ମୁଁ ଭ୍ରାନ୍ତ ମାନବ ।

କେତେ ଦୂରେ ପଡ଼ିଆରେ ବାଆ ପାଣି ତଳେ
କୁଡ଼ୀଟିଏ ନଇଁ ଧୀରେ ଗୃହେ ଟଳଟଳେ ।
ବାଟୁ ବାଟୁ ଘାସ ବଣ୍ଟୁ ତୋଳୁଛି ପତର,
ଅଣ୍ଟିରେ ପୂରାଇ ତାକୁ ନଉଁଛି ଆବର ।
ବଦନେ ବିଷାଦ ଅବା ହାସ ନାହିଁ ତଳେ;
କିଏ ଏ ଦୁଃଖିନୀ ଆଜ ଏ ମଧ୍ୟ ମଣ୍ଡଳେ ?
ଏତେ ପାଣି ପବନେ ଯେ ହୋଇଛି ବାହାର,
କୁଟୀର ଦ୍ୱାରେ ତ ବସି ପାଉଥାନ୍ତା ତାର ।

ଖଣ୍ଡେ ଦୂରୁ ଦେଖି ମୋତେ କ ଭାବିଲା ଚିତ୍ତେ,
ଏକା ଠିଆ ଗୃହେଁ ବୁଢ଼ୀ ରହିଲା ଚକିତେ ।
ଦଣ୍ଡେ ଦୁଇ ମୁଖୁଁ ତାର ନ ଫୁଟିଲା ବାଣୀ,
ଶେଷେ ସେ ପୁଚ୍ଛିଲା ହସି କହିଅଛେ ଠାଣି;—
"ଏତେ ପାଣି ପବନ ରେ ଏକୁଟିଆ ଆଜ
କାହିଁକି ଆସିଲୁ, ବାବୁ, ଗାଆଁ ଘର ଛେଡ଼ି ?
ଗୋଡ଼ ହାତ କୋଳ ମାଡ଼ିଯିବଣି ଜକର,
କପାଇଁ ଆସିଲୁ, ପୁଅ, ଏତେ ସୁକୁମାର ?"

"ବାଟବଣା ହୋଇ ମୁହିଁ ଆସିଛି ବାହାର,"
କହିଲାରୁ, ମୋ ସଙ୍ଗତେ ବାହାରିଲା ନାରୀ ।
ଅଣବାଟେ ଅନ୍ଧାରେ ସେ ଚାଲି ଆଗେ ଆଗେ,
କେତେ ଦୂରେ ଯାଇ ବାଟେ ମିଳିଲୁ ସବାଗେ ।
ପଥେ ବେନି ଆଗ ପଛ ହୋଇ ଯିବା କାଳେ,
କୁତୂହଳେ ନାନା କଥା ପୁଛା କଲି ତାରେ ।

ଉଦାସ ପଡନେ କେତେ ଲୁହ ଲୁଗାଇ,
କହିଲ ସେ ଘରେ ତାର କେହି ଆଉ ନାହିଁ;
ଛଅଟି ପୁଅରୁ ପ୍ରାଣେ ନ ରହିଲ ଜଣେ,
ସେ ଲାଗି ଆହାର ଖୋଜ ବୁଲେ ବଲ ବନେ ।

"ଏକୁଟିଆ ପଡନ୍ତି ରେ ସକଳ ହରାଇ,
ପୋଡ଼ା ପେଟଟାର ଜାଳା ଟଲେ ତଳେ ନାହିଁ ।"
ଏତେ କହୁଁ, ନୟନୁ ତା ଝରିଗଲା ଲୁହ,
ଗମ୍ଭୀର ହୋଇଲା କଳା ମେଘୁ ବଳ ମୁହଁ ।
ସେ ଦୁଃଖ କାହାଣୀ ଶୁଣି, ବ୍ୟଥିତ ହୃଦୟେ,
ଦୀର୍ଘ ଶ୍ୱାସଟି ମୁଁ ସହୁଁ ନେଜଳ ମସ୍ତକେ,
ମୋତ ଚ୍ଛଳିଗଲା ନାସା ନେତ୍ର ମାର ପୋଚ୍ଛି;
ଗଲା ବେଳେ ପଦେ ହେଲେ କହିନାହିଁ କିଛି ।
ମୁହିଁ ଦଣ୍ଡେ ହେଲା ଠିଆ ଥକାମାର ତହିଁ,
ପଛୁ ତାର ଯିବା ବାଟେ ବଖାଟେ ଅନାଇଁ ।
ନିମିଷକେ ବରଷାର ଧାରା ମଧ୍ୟେ ମୁହୁଁ
ଲୁଚିଗଲା ବୁଢ଼ୀଟି ସେ, ନ ଦଶିଲା ଆଉ ।

ସଖାଙ୍କ ସଙ୍ଗତେ ଯାଇ, ବସି ଆଳାପନେ
ଯାପିଲି ଯାମିନୀ ସୁଖେ ସଉଧ ଭବନେ ।
ଗଗନୁ ବରଷା ଧାରା ପଡ଼େ ଅବିରଳ,
ଘଡ଼ଘଡ଼ ଶବଦେ ତ ଲାଗୁଥାଏ ଡର ।
କାହିଁ ସେ ରହିଲା ଆହା ପାଣି ପବନ ଯାଇ
ପଡ଼ିଆରେ ବୁଢ଼ୀଟି ସେ, କେହି କାହିଁ ନାହିଁ ?

ତା ଭୁଲେ ନିମିଷେ ଆଜ ବ୍ୟଥିତ ଅନ୍ତରେ
ବୁଡ଼ିଥାନ୍ତି ସ୍ନେହଭରା ବାଆ ପାଣି ତଳେ ।
ଆଜ କଥା ଦୁଇ ପଦ ଅଧର କମ୍ପନେ
କହିବାର ଶୁଣିଥାନ୍ତି ମଞ୍ଜୁଳ ମରମେ ।

ଆହା ସେ ଦୁଃଖିନୀ ଏକା ସେ ଗ୍ରାମ କାନ୍ତାରେ,
ଥରି ଯାଉଥିଲା ଅଙ୍ଗ ବାଆ ପାଣି ଜାଡ଼େ !
ଦୁଇ ପଦ ଶାଗ ମୁହିଁ ଘାସ ବଣୁ ତୋଳି,
ଯତନେ ଅଣ୍ଟିରେ ତାର ଦେଇଥାନ୍ତି ଭରି ।
ଛିଣ୍ଡା କନା ଖଣ୍ଡିକେ ତା ମେଣ୍ଟେଉଛି ଲାଜ,
ବୟସ ବିଷାଦ ଭାରେ ପଡ଼ିଅଛି ଭାଜ ।
କାହିଁ କେତେ ଦୂରେ ଯାଇ ରହିଲା ବୁଢ଼ୀଟି;
କଳ୍ପନାରେ ଏବେ ସିନା ପୂଜେ ମୁଁ ତା ଥିନ୍ତ ।

ପର ହୋଇ ଆଜ ମୋର ରକ୍ତ ସେ ନାହିଁ ତ,
ତା ଦୁଃଖ ହୋଇଛି ପରା ମୋ ଜୀବନ ବ୍ରତ ।
ନିଜ ଦୁଃଖେ ଅଟରେ ଯେ ନ କରଇ ଖାଗୀ,
ତାଠାରୁଁ ବଳି କେ ମୈତ୍ରୀ ଭୋଗୀ ଅନୁରାଗୀ ?
ମୋ ଯୌବନେ କୁଟୀରେ ମୋ ଥିଲା ବୁଢ଼ୀମାଆ,
କେତେ ଦୁଃଖ ଜୀବନେ ସେ ଭୋଗିନାହିଁ ଆହା !
ମରିଗଲା ସିନା, ତିଳେ ନ ଦେଲା ଜଣାଇ;
ସେହି ତ ତା ବଡ଼ପଣ, ତା ସ୍ନେହ ସୋହାଲ ।
ସେ ସ୍ନେହ ଶୋଣିତ ଧାରେ ରଚିତ ଏ ତନୁ;
ମରିବି ମୁଁ, ଯେଉଁ ଦିନ ବିସୋରିବି ମନୁ ।

## ଓଲଟ ପ୍ରବାହେ

ମାଧ୍ୟାହ୍ନ ତପନ କନକ କିରଣେ
କାନନ୍ କୁସୁମ ଦୋଳି,
ଏକାକି ପଥିକ ବନ ପଥ ପାରେ
କି ଭାବେ ଯାଉଛି ଚଳି ।
ଦୂରୁ ଦୂରେ ଯାଏ ଚାଲି ନସ ଭୁଜେତେ,
ଚରଣେ ସରଣୀ ମାପି,
ସମ ବ୍ୟବଧାନେ ଏକ ଏକ ଫୁଲ
କେ ଜାଣେ କା ଲାଗି ଥାପି ।
ମୃଦୁ ହାସେ ଶୋହେ ଅଧର ଯୁଗଳ
ପ୍ରଦୋଷ ପାଟଳେ ମିଳି,
ପଥ ତରୁ ଲତା ଚନ୍ଦ୍ରାତପ ତଳେ
ତନୁ ମଧୁରିମା ଢାଳି ।

ଆନ ପଥିକ ଏ ଓଲଟ ପଥେ କେ
ପାଶୁ କ୍ରମେ ହୋଇ ଦୂର,
ଗୋଟି ଗୋଟି ଫୁଲ ସରଣୀ ଚଳୁଁ
ନମିଷେ କରୁଛି ଜୁର ।
ହସୁଛି ଖେଳୁଛି, ଧରୁଅଛି କରେ
ତନ୍ତୁ ଢୋଳୁଅଛି ଯେତେ;
ନୟନ ଇଙ୍ଗିତେ କି ଗାଇ ଚାଲୁଛି
ପୀରତି ଗୀତିକା ସତେ ।

କ ଉତ୍ସ ହୃଦୟୁ ଢଳୁଅଛି ତାର
ତାକୁ ସିନା ଥିବ ଜଣା;
ସେ ବୃନ୍ଦି ଯାଉଛି ଆପଣା ଧିଆନେ
ନ କରିଥିବ କଳନା ।

"କପାଇଁ, ପଥିକ, ହଟିଲ ଆହା ସେ
ପର ଅରପିତ ଶିଖା;
ବନ ମୃଗଶିଶୁ ଚରୁଏ ହସିତେ
ବନ ଦେଶେ ଗଲ ମିଳି ?
ଆଜ ତ ସ୍ୱରୂପ ନ ଦେଖେ ତୁମର;
ଉଭେଇଯାଇଛ କାହିଁ;
ବାଳୁତ ଅଧର ସ୍ମିତ ସୁଷ୍ଠୁ ପରି
ହସିଥେ ବହିଯାଇ ।
ଚହ୍ନି କ ରଖିଛ ସେ ଆନ ପଥିକ-
ବଦନ ନୟନ ଧାରେ,
ସଖୋଳିବା ଲାଗି ପୁଣି କେବେ ଭେଟ
ହୋଇଲେ କାନନ ମାଳେ ?
ସେତେବେଳେ ତୁମେ ଥାପି ଥାପି ଯିବ
ପଥେ ଗୋଟି ଗୋଟି ଫୁଲ;
ହସି ଖେଳ ନାଚ, ଗୋଟି ଗୋଟି ପୁଣି
କରିବ ନେସ ତାହା ଜୁର ।
ଅନାଇ ପଛକୁ ଦେଖିବ ନନ୍ଦନେ,
ଏ ଭବ ପୀରତି ଖେଳେ

ଗନ୍ଧ ନାହିଁ ଯାହା ତାଙ୍କ ବସି ଆନ
ତନେଣ ପଗଣ ମେଳେ ।
ମୁଁ ଆନା କାନନ ସରଳ ବଢଗ
ବନ ଫୁଲ ଫୁଲେ ଗଡ଼ା;
କାହୁଁକି ବୁଝିବ, କ ଗୂଢ଼ ନବେଦନେ
ଏ ବନ୍ଧୁ ହୃଦସୁ ଭରା ?
ଯେ ପ୍ରୀତି ଧାରାଟି ବହୁଯିବାର ମୁଁ
କାବନେ ଦେଖିଲି ବନେ,
ସେହି ଧାରା ପୁଣି ଓଲଟ ପ୍ରବାହେ
ଲୋଡ଼ଇ ଉଡ଼ିବ ପ୍ରାଣେ ।
ନତେବେ ମିନା ସୁଖେ ବୁଲାବ କାନନେ,
ଉନ୍ମୁକ୍ତ ଉଦ୍ଧ୍ଵ ଉଡ଼ି;
ଫୁଲୁଁ ଫୁଲେ ଯିବ ବସି ହେ, ବଢଗ-
ପରଣ ବାରତା ଫେଡ଼ି ।"

## ଧାଇଁଲୁ ମୋ କବ୍ୟ

ବଡ଼ ଘ୍ରାଇ ତଳେ ଘାସ ସ୍ନିଗ୍ଧ ଆସ୍ତରଣ
ବକୁଳ ସୁବାସେ ସୁଧା-ଧଉତ ମୋହନ ।
କନକ ପତଙ୍ଗ ଯୁଗେ ବନ ପ୍ରଜାପତି
ଫୁଲୁଁ ଫୁଲେ ମଧୁ ପିଇ ଉଡ଼ୁଥାଏ ନିତି ।
ଶୁଣୁଥାଏ ତରୁଡାଳ ପିକ କଣ୍ଠ ସ୍ଵନ,
ନ ପରଶି ପଥୁରେ ନସ ଶ୍ୟାମଳ ବତାନ !

କୋମଳ ସାଧବବୋହୂ ମୃଦୁଳ ଚରଣେ
ପ୍ରାବୃଟେ ଚଳନ୍ତା ଯିବା ପାଟଳ ବସନେ ।
ହେମନ୍ତ ପ୍ରଭାତେ ଯିବା ଢଳ ଢଳ ବେଶେ
ଚଳନ୍ତା ତୁଷାର ବିନ୍ଦୁ ଅରୁଣ ପରଶେ ।
ଏବେ ଏ ବସନ୍ତ ମଧୁ ମଳୟ ସମୀରେ
ବାହୁ ଉପାଧାନେ କିଏ ଶୋଇ ଗୁଳ ତଳେ ?
ତନୁଭାରେ ଭଙ୍ଗପନ୍ତ ନୋଇଁଛନ୍ତି ଶିର,
ଶ୍ୟାମ ବକ୍ଷେ ଲଭି ନବ ରଜତ ସମ୍ଭାର ।

"ମଧ୍ୟାହ୍ନ ଶୟନେ ମୁଦ୍ରି ଯୁଗଳ ନୟନ,
କି ଦେଖୁଛ, ନିଦ୍ରିତ ହେ, ନିସର୍ଗ ସ୍ୱପନ ?
ଅଳପ ଇଙ୍ଗିତ ହାସେ କମ୍ପଇ ଅଧର,
ଅଲକ୍ଷିତେ ଫେଇ ମୁଗ୍ଧ କିଶୋର ଅନ୍ତର ।
ଅଧେ ଏ ମରତ ଭୂମି ସୁଖ ଦୁଃଖ ଭୁଲି,
କି ସ୍ୱର୍ଗ ସମ୍ପଦେ ଦିଅ ଆନ ଅଧ ଢାଳି ।
କୈଶୋର କାମନା ଯେତେ ବିଷୋର ସକଳ,
କିଏ ଏ ଶୋଇଛ, ବନ୍ଧୁ, କଳ୍ପନା କି ନର ?

"ପଞ୍ଚ ଅନ୍ତରାଳେ ଲୁଚି; ତପନ କିରଣ
ନିଦୟ ପରଶେ ଆସି ଛୁଇଁଛି ବଦନ ।
ବିନ୍ଦୁ ବିନ୍ଦୁ ସ୍ୱେଦ ବାରି ଝରୁଛି କପାଳେ;
ଧୂଳି ମାଟି ଅଙ୍ଗେ ଯିବା ଲାଗିବ ଭୂତଳେ ।

ମଧୁର ସ୍ୱପନେ ଆହା ମୁଦ ନେତ୍ର ବେନି,
ଏତେ ଦିନମାନ ଲବେ ପାରୁ ନାହିଁ ଜାଣି!
ସମୀର ହିଲ୍ଲୋଳେ ଏ ଯେ ଖେଳୁଛି କାନନ,
ଡାଳୁ ଡାଳୁ ଝଡ଼ି ତଳେ ପଡ଼ୁଛି ସୁମନ,
ଡାଳୁ ଡାଳେ ଉଡ଼ି ପିକ ଗାଉଛି ସଙ୍ଗୀତ;
ଉଠ ନିଦ୍ରା ତେଜି, ସଖା, ସପନ ଜଡ଼ିତ।"

ଛୁଟିତେ ସେ ତୃଣଶଯ୍ୟା ତେଜି, ଅଯତନେ
ଉଠିଗଲେ ନିଦ୍ରା ତ ସେ ତହୁଁ ମୋ ବଚନେ।
ନୟନେ ଦେଖିଲେ ବନ କନକ ମୂରତି,
ଶ୍ରବଣେ ଶୁଣିଲେ ମୃଦୁ ଦୂର ପିକ ଗୀତି।
ସେ ପୁଷ୍ପ ତଳପ ତରୁ ତଳେ ଥିଲା ରଚି,
ତହିଁ ସେ ବସିଲେ ଧୀର ଚରଣେ ପରଶି।
ମୁହିଁ ଆରେ କୁତୂହଳେ ପୁଚ୍ଛି ନାନା କଥା;
ନୀରବେ ଶୁଣନ୍ତି ପଛୁ ନାଡ଼ି ସେହୁ ମଥା।
ଏହି ଭାବେ କେତେ ବେଳେ ପ୍ରବେଶି କୁଟୀରେ;
ଗଲା ନିଶି ଦିନ ସୁଖେ ସାଙ୍ଗ ସାଥି ମେଳେ।

କେତେ ଦିନ ହେ ଦିନୁଁ ମୋ ଗଲାଣି ତ ବିତି,
ସେହି ଛବି ନେତ୍ର କଥା ନାଚୁଅଛି ନିତି ?
ବଟ ବୃକ୍ଷ ତଳେ ଏବେ ଗତାଗତ ବେଳେ
ନାହିଁଛ କପାଇଁ ପାଦ ଥାଏ ମୁ ଭୂତଳେ ?
ସଙ୍କୋଚେ ଟଳଇ କପାଁ ପଥଧୂଳି ମାଡ଼ି,
ଆଘାତେ ସତେ ବା ପ୍ରାଣ ଯିବ ତାର ଛାଡ଼ି ?

ଏ ବିଷମ ସଂଯମ ମୋ କପାଇଁ ଜୀବନେ ?
ଉଠାଇ ଯା ଦେଲ ଆହା ନିଠୁର ବଚନେ !
ଶୋଇ ତ ଥାଆନ୍ତ ବିଶ୍ବ ବିସ୍ମୃତି ତଳପେ,
ଆପଣା ବିସ୍ମୃତି, ବନ୍ଧୁ, ରଚି ତହିଁ ଆପେ ।
ସେ ସୃଷ୍ଟି ନିମେଷ ଶିଶୁ ଭରି ନେଇ କୋଳେ,
ଅର୍ପନ୍ତ ଜାଗରେ ପୁଣି ତରୁ ଲତା ଫୁଲେ ।
ସେ ସୁଧା ଗୀତିକା ତାନ ଆହରି ପଲ୍ଲବେ,
ଢାଳିଥାନ୍ତ ବନ ଗ୍ରାମେ ପିକ କଣ୍ଠୀ ସ୍ବନେ ।
କାହିଁ ଉଠାଇଲ, ଭ୍ରମେ ଭାଂଗିଲା ସ୍ବପନ,
ମୂର୍ଚ୍ଛିଲା ମରତେ ଜାଣି ସେ ସ୍ବର୍ଗ ରତନ ?

ଶୁଅନ୍ତ ମୁଁ, ସଖା, ଦିନେ, ସେ ତୃଣ ଆସନେ
ଏ ତନୁ ଲଭନ୍ତି ନିଦ୍ରା ମଧୁ ବିସ୍ମରଣେ ।
ବଦନେ ପରଶୁଥାନ୍ତା ଶବଳିତ ଭାନୁ,
ସ୍ବେଦ ବାରି ଶ୍ରମ ବାତେ ହରି ଅବେଧ ମନୁ ।
ତୁମେ ଏହି ପଥେ ବୁଲି ଉଦାସ ପସୁରେ,
ଭେଟନ୍ତ ମୋ ସୁପ୍ତ ଘଟ ଦେହ ତରୁ ତଳେ ।
ସ୍ନିଗ୍ଧ ଅଧର ବାଣୀ ବଖାଣି ପଦେକ,
ଭାଂଗନ୍ତ ମୋ ନିଦ୍ରା; ଆହା ଆଉ କ ଅଧିକ !

## ପ୍ରୀତି ତ୍ୟାଗ

ପହରୀ ଗଗନେ ଉଇଁ, ନିଶାମଣି
    ଢାଳଇ ରଜତ ଧାର;
ତଳେ କଇଁ ମାରେ, ଖେଳାଇ ସରସେ
    ସ୍ୱପନ ସୋହାଗ ଭାର।
ସମୀର ହିଲ୍ଲୋଳେ ସରସୀ ସଲିଳେ
    ଲୋଟେ ପୁଲକିତ ପ୍ରାଣେ,
ସଘନ ଜଡ଼ିତ ଖିର ଫୁଲ ଚୟେ
    ମୋହି ସଉରଭ ଦାନେ।
ଜଳ ପ୍ରତିଫଳେ ହସି ନିଶି ବେନେ,
    ଦେଖଇ ବଦନ ଠାଣି;
ହସିତ ସଙ୍ଗୀତେ ଶୁଣଇ ନବମୀ
    ଦୀର୍ଘିକା କଲ୍ଲୋଳ ବାଣୀ।

"ଏକାକି ସ୍ମୃତି, ମୁଁ ସଙ୍ଗାତ ସାଥି ତ
    ନାହିଁ ଏ ଜୀବନେ ଲୋଡ଼ି;
ଏତେ ସଙ୍ଗୀ ଏବେ ଘେରିଛନ୍ତି ମୋରେ,
    ଜୀବନୁ ଅଧିକ କରି।
ଏ ସୁଖ ଯାମିନୀ ଯାପିବ, ବଧୂ ହେ
    ପ୍ରୀତି ବନ୍ଧନରେ ମିଳି,
ବନ୍ଧୁ, ସୁଖ ମିଳୁ ଅପାର ହିଲ୍ଲୋଳେ
    ଭସାଇ ବାସନାରାଜି।"

ମାନସ ଆତ୍ମା କଏ ସରସ ବନ୍ଦନ
ଉଭା ନପ ହୋଇଛି ମନରେ;
ଅଶ୍ରୁ, ବାରି ଧାରେ ମୁଦିଛି ନୟନ,
ଭାଜ ବୃଥା ତନୁ ଲତେ ।
ଜୀବନ ଯୋହାର ସରିଛି ମାଜଲ
ତା ଫୁଲ ନମେଷ ଭ୍ରାନ୍ତେ;
ସରସୀ କମଳ ରହିବ କେତେ
ବ୍ୟୋମ ରବି ହେମ ବନେ ?

"ଫୋଟ ନେଇ ବାସ, ଫୋଟ, ଗୋ କମଳ,
ତେଜ ମନୁ ଅଭିମାନ;
ଷଣ୍ଡାଦେ ଯାଇଛି ଶୁଖି ରୂପ ଶିଖା,
ମଉଳିଯାଏ କି ପ୍ରାଣ ।
ପ୍ରୀତି ତ ଯାତନା ମର ଦେହ୍ନି ହୃଦେ,
ତାହେଇ ସନ୍ତାପ ଭାରେ;
କି ବିଷ କଣିକା, ଭୁଲାଇ ଜୀବେ ସେ,
ଏ ବିଶ୍ୱ ପୀୟୂଷ ଧାରେ !
ଜୀବନୁ ପ୍ରିୟ ସେ କରଇ ନମିଷେ,
ସେ ପୁଣି ଭୁଟାଇ ମାୟା,
ଦୂରୁ ଦୂରେ କାହିଁ ଗୃଜାଯାଏ ସ୍ନେହେ,
ଲୁଚାଇ ସ୍ୱରୂପ ଛାୟା ।
ଯେତିକ ଆଦରେ ରହିଥାଏ ହୃଦେ,
ସେତିକି ଦହଇ ପ୍ରାଣ;
ପ୍ରୀତି ପସରକୁ ନଦୟ ତଥଗେ
କରିଯାଏ ଖାନମାନ ।

ପୋଛ ନେତ୍ର ବାରି, 'ପୋଛ, ଗୋ କମଳ,
ବିସୋର ଭାବନା ମନୁ;
ହ୍ରଦ ନୀର ହୃଦେ ନଚସି ଉଲ୍ଲାସେ,
ସଜାଡ଼ି ଉଜଡ଼ ତନୁ ।
ବୁଡ଼ିଯାଅ, ବନ୍ଧୁ, ବୁଡ଼ି ଦେଖ ଗଗନେ,
ଲୁଚୁଛି ରଜତ ଧାରା;
ଉଇଁ ଆସୁ ରବି, ପଖାଳ କନକେ
ଆକାଶ ଅବନୀ ସାରା ।

"ଯାଉଛି, କମଳ, ଦିଅ ଗୋ ମେଲାଣି,
ଏ ଫୁଲ ଜୀବନ ସାର;
ଫିଟାଅ ନୟନ, ସ୍ମୃତି ସୁଧା ଧାରେ
ମୋହ ଏ ସରସୀ ବାର ।
ପିକ କଣ୍ଠ ଗୀତ ଶୁଣିବୁ ଉଷତେ,
ଦେଖିବୁ ପୂଜନ ମେଳେ;
ହୃଦ ପ୍ରୀତି ଗାଥା ହେବୁ କୁହାକୁହି
ପ୍ରତି ପ୍ରତିବାସୀ ତୁଲେ ।
ସମୀରେ ଢଳିବୁ, ସରସୀ ମୁକୁରେ
ଦେଖିବୁ ବଦନ ଠାଣି;
ରବି ସ୍ୱର୍ଣ୍ଣ କର ପରଶେ ଶୁଣିବୁ
ପୀରତି ନୀରବ ବାଣୀ ।
ଯିବାର ସମୟ ହେଉଛି ଉଚ୍ଛୁର,
ଦିଅ ଗୋ ମେଲାଣି ମୋତେ;
ଆତପେ ନବେଶି ନମିବେଷ ଏ ତନୁ,
ବୁଡ଼ିବ ସରସୀ ନୀରେ ।"

# ଆସିବ ବାହୁଡ଼ି ?

[ ମତ୍ୟବାସୀ ବିଦ୍ୟାଳୟର ଜଣେ ଛାତ୍ର ଏକ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଗୋଟିଏ ବନ୍ଧୁସଂଘ ଗଢ଼ିଥିଲେ । ସଂଘର କେତେ-ଗୁଡ଼ିଏ ନିୟମ ଥିଲା । ତହିଁ ମଧ୍ୟରୁ ଜଣେ ସଂଘର କୌଣସି ଏକ ନିୟମ ଭାଙ୍ଗିଥିବା ଘଟଣା ପରେ ଏ ପଦ୍ୟ ଲେଖାଯାଇଥିଲା । ସେ ଘଟଣା ପରେ ସେ ସଂଘରୁ ବିଦାୟ ନେଇ ଗୃହକୁ ଗଲେ । କ୍ରମେ ସଂଘଟି ମଧ୍ୟ ଶିଥିଳ ହୋଇପଡ଼ିଲା । ]

କୁସୁମ କାନନ ମଧ୍ୟେ ହେମ ସୂର୍ଯ୍ୟମୁଖୀ
ନିଜ ବଳରେ ଛଅ ଶାଖା ରଖିଅଛି ଟେକି ।
ମଞ୍ଜୁର ତା କଳେବରେ ଶୋଭା ଦିଶେ ଅତି
କନକ ପ୍ରଫୁଲ୍ଲ ହାସେ ସୂର୍ଯ୍ୟମୁଖୀ ଗୋଟି ।
ପ୍ରତି ଶାଖେ ତହିଁ ପାଶେ ଶୋଭା ଭରେ ଢଳ,
କୁସୁମ ଅଛନ୍ତି ସ୍ଥିତେ ଏକ ଏକ କଳା ।
ଦିନୁ ଦିନ ନବ କାନ୍ତି ଆସଇ ବଳଶି;
ନବୀନ ପାଖୁଡ଼ା ମେଳି, ଉଠୁଛନ୍ତି ହସି ।
କେଶରୁ କେଶରେ ବସି ମଧୁପାୟୀ ଅଳି,
ନିଏ ମଧୁ ବନ୍ଦ୍ରାୟୁ ବିମୋହିଲେ ଆଦରେ ।
ସମୀର ଚରଣେ ଯେବେ ଯାଏ ଏକ ନାଚ,
ଖେଳେ ପ୍ରତି ଅଙ୍ଗେ ଉଠେ ବିମୋହନ ନାଚ ।
ଏକଇ କଳ୍ପନା ଧ୍ୟାନ ସକଳ ପରାଣେ;
ଏକ ଛନ୍ଦ କବା ମେ ଯେ ମନେ ସ୍ପନ୍ଦନେ ।
ଦୁଲୁ ଦୁଳନ୍ତି ବନ୍ଧାବନ୍ଧ ସୋଦର ସୋହାଗେ,
ଦୁଲେ ଦୁଲନ୍ତି ବଳସନ୍ତ ସମ ଅନୁରାଗେ ।

ସୁଦୂର ଉଠେନ ଛୁଟିଲ ସମୀର ମେଳାଣେ
ଏକ ମୁଠେ ଆଲୋକର ଅଞ୍ଜଳି ଅତଟେ ।
ଉପବନେ ବରଷନ୍ତି ସୁଧା ଶୋଭାବନ,
ମରମେ ଆନନ୍ଦ ଲୋଳି ପରଶ ଭୁବନ ।

ହେନେ କଳିଟିଏ ତହିଁ କ ସ୍ୱର ନିବେଦନେ
ପଥ ଅନ୍ତରାଳେ ଲୁଚି ରହିଲା ନିମେଷେ ।
ବଦନେ ଲାଗିଲା ନାହିଁ ଆଲୋକ କିରଣ,
ନେତ୍ରେ ନ ହସିଲା ନବ୍ୟମ ବିମଳ ଗଗନ ।
ସୋଦର କଳିକା ଯେତେ ଗଲେ ତା ପାସୋର,
ଘୋଟିଗଲା ଚଉଦିଗେ ଘନ ଅନ୍ଧାର ।
ତହିଁ ମଧ୍ୟେ କଳିଟି ଯେ ଫେରାଇ ବଦନ,
କାଟିଦେଲା ସଖା ସ୍ନେହ ଅଚ୍ଛେଦ୍ୟ ବନ୍ଧନ ।
ଭୂଇଁ ତଳେ ପଡ଼ି, ଗଲା ଧୂଳି ସଙ୍ଗେ ମିଳି;
ଲୁଚିଗଲା ସତ୍ତା ତାର ଆହା ଏହିପରି !

ବାକି ଯେ ରହିଥି ଫୁଲ ସୋଦର ସରନ୍ଧ୍ର
ବୃନ୍ତ ଧରି ରହିବାର ସହିଲେ ଦ୍ୱନ୍ଦ୍ୱେ,
ନାନା ହାସ୍ୟ ରବ କରେ ପଡ଼ିଲେ ଢାଉଁକି,
ସମୀରଣେ ଉଡ଼ି ଭୁଲେ ନାଚ ଖେଳ ଭୂଲି ।
ସତତ ଦୁମନ ମେଳୁ ନାହିଁ ଏକ ସଖା;
କାହିଁ ମନେ ମାଧୁ ଭେଜ ଦେଖିଲେ ଏକା ।
ହଜିଲା ସେ ସୂର୍ଯ୍ୟମୁଖୀ କଣ୍ଠଳେଯୁ ଝଡ଼ି,
କଣ୍ଠଳେଁ ଆଉ କ ସେ ଆସିବ ବାହୁଡ଼ି ?

## ପିକର ଆଦ୍ୟ ଗୀତ

କାହୁଁ କି ଅଜଣା ଦେଶୁଁ ଆସିଲୁଣି
  ଫେର, ପ୍ରିୟ ପରଭୃତ;
ବିରହେ ତୋର ରେ ଏତେ କାଳ, ପିକ,
  ଥିଲି ଅତି ସନ୍ତାପିତ ।
ନିତି ନିତି ଆସେ ଏ କୁଞ୍ଜ କାନନେ
  ତୋ ଗୀତ ଶୁଣିବା ପାଇଁ;
ଲତା ଅନ୍ତରାଳେ ବସି ରହୁଥାଏ,
  ପରାଣ ଆବେଗରେ ରୁନ୍ଧି ।
ଆଜ କେବେ ପୁଣି କୁଞ୍ଜୁ ନିକୁଞ୍ଜେ ମୁଁ
  ଯାଏ ଧୀରେ ଅପସରି;
ନିମିଷୁ ନିମିଷେ ଆଶା, ତୁ କଣ୍ଠୁ ତୋ
  ଦେବୁ ତାନଟିଏ ଢାଳି ।
ନିମିଷୁ ନିମିଷେ ଭ୍ରମି ଦୂର ପଥେ,
  ବାଜେ ତୋ ଗୀତ ମୋ ଚିତ୍ତ;
କାନ ଡେରି ତହୁଁ ରହେ ମିନା, କାହିଁ
  ନ ପାରେ ଶୁଣି କଣ୍ଠତେ ।
ଆଶାରେ ନିରାଶା ଲଭି, ନିରାଶାରେ
  ପରାଣେ ସମ୍ବାଦ ଆଶା,
ନିତି ନିତି ଏଥି ଆସିଛୁ, ରେ ପିକ;
  ନିତି ମୋ ଏକଇ ଦଶା ।
ଆଜ ତୋ କଣ୍ଠର ଏ ଆଦ୍ୟ ଗୀତଟି
  ପରାଣେ ନ ପାରେ ଧରି;

ହୃଦୟ ତାପିତ ପିପାସା ତନ୍ତ୍ରାର,
    ଚଞ୍ଚଳ ହେଲେ ଉତ୍ସୁକା ।
ନିତା ଅନ୍ତରାଳେ ଗୃହ୍ନିଁ ବସିବାର,
    ଫେରିବା ନାରଣେ ନିନ୍ତ
ଯୁଗେ ଯୁଗେ, ପିକ, ମନୁ କି ପିବ ରେ ?
    ଆହା ଏ ସୁଧା ପୀରତ !
ସୁଖେ ଦୁଃଖେ ଭୁଞ୍ଜ କୋଟିନିଧି ମୋର,
    ତୋ ବିନା କିଏ ଏ ବନେ ?
ଯେତେ ଦୁଃଖେ ଥିଲେ, ତୋ ଗୀତ ଶୁଣି ତ
    ସକଳ ପାସୋରେ କ୍ଷଣେ ।
ସକାଳୁ ସଞ୍ଜ ତୋ ଗୀତ ଶୁଣୁଥାଏ,
    ରୂପ ନ ପାରଇ ଦେଖି;
ଶୂନ୍ୟ ମଧୁତାନେ ଚୋର ତ ନହ୍ନିଛୁ
    ମୋର ଏ ପରାଣଟିକ ।
ତରୁଲତା ଶ୍ୟାମ ନିସର୍ଗ ଗହଳେ
    ରହୁ ତୁ ଗୁପତେ ତୋର;
ଏ ଜୀବନ ଲୋଡ଼ା ବେଳ ବୁଝି, ଯେବେ
    ଶୁଣାଉଥିବୁ ରେ ସ୍ୱର ।

## ଯୁଗଳ କଳିକା

ଚାରୁ ଶ୍ୟାମ କିଶଳୟେ ଯୁଗଳ କଳିକା,
କାନନ ସାୟାହ୍ନ ନଭେ ବିମଳ ତାରକା ।
ଏକେ ଆନେ ବିମୋହନେ ଗୁନ୍ଥା ପ୍ରୀତି-ଡୋରେ,
ଚୁମ୍ବନ ସୋହାଗ ମିଷ୍ଟ ଅଧରୁ ଅଧରେ ।
ତରୁଣ ବିଭବେ କାର ନ ଫୁଟିଛି ବାସ,
ପାଖୁଡ଼ା କେଶର ଶିରୀ ନୋହିଛି ପ୍ରକାଶ ।
ଭବିଷ୍ୟ କଳ୍ପନା କେତେ ସମ୍ଭାବ ପରାଣେ,
କୁସୁମ ପ୍ରେମିକ ଅଳି ଉଡ଼େ ଗୁଞ୍ଜି ଗାନେ !

୨

ମୃଦୁଳ ମଳୟଧାରି ବହି ଅବିରତେ,
ଯୁଗଳ ସୁହୃଦ ତନୁ ଖେଳାଏ ଶଙ୍କିତେ ।
ପାଶେ ଆନ କିଶଳୟେ ପ୍ରୀତି ପ୍ରତିଯୋଗେ
ନିକଟେ ଆସେ ନବ କଳି ବିକଶି ସରାଗେ ।
କି ଦୁର୍ଲ୍ଲଭ ଶିରୀ ସେହୁ ସାରା ଉପବନେ,
ନ ଦେଖେ ଦୋସର ନେଶ ଅବନୀ ଗଗନେ ।

ଏବେ ଆହା କାହା କର କଠୋର ପରଶେ
ଛିଡ଼ି କଳିଟିଏ ଡାଳୁ ପଡ଼ିଛି ନମିଷେ !
ଅଳ୍ପେ ଆସିଅଛି ଶୁଖି ବଦନ ମାଧୁରୀ,
ହସଟିକ ଛାର କିଏ ନେଇଅଛି ଚୁରି ।
ଆନ କଳିଟି ସେ ଡାଳେ ଅବନତ ମୁଖେ
ସୁହୃଦ ମଳିନ ତନୁ ନିରେଖଇ ଦୁଃଖେ !

ଝସୋରନ୍ତି ପର୍ବତର ସବଳ ବାସନା,
ସୁମନ ସୁରଭି ହୃଦେ କି ଆଜି ଭାବନା !
କିମ୍ବା ଏତେ ମ୍ଳାନମାନ ଏକାକୀ କଳଟି ?
ଝଡ଼ ତରୁଡ଼ାଳୁ , ଯାଅ ଭୂଇଁ ତଳେ ଲୋଟି ।
କଣ୍ଠଲଗ୍ନେ ବସି ଯେବେ ମଧୁର ମିଳନେ,
ସୁମନ ସମ୍ପଦ ଭୋଗ ନୋହିଲ ଜୀବନେ,
ଅକ୍ରମ ସପନେ ଶୋଇ ଧୂଳି ମାଟି ତଳେ,
ସେ ସୁଖ କଣିକା ଆଜି ଭୁଂଜନେ ନଦେଲେ ।
ପ୍ରୀତିର ସେ ସୁମଧୁର ଅଚ୍ଛେଦ୍ୟ ବନ୍ଧନ
ସେ ତ ବାରେନାହିଁ ଭବେ ଜୀବନ ମରଣ ।
ଜୀବନ୍ତେ ଏ ମର୍ତ୍ତ୍ୟେ ଅଟେ ବନ୍ଧୁ ଯେ ଯାହାର,
ବିଚ୍ଛେଦ ଉଭଙ୍କୁ କେବେ ରଚିପାରେ କାଳ ?
ସବୁପାରେ ଗ୍ରାସି ସେ ଏ ଭଙ୍ଗୁର ଜଗତେ,
ପ୍ରୀତି ମାତ୍ର ଏଡ଼େ ତାର କବଳ ଈରତେ ।

—

## ବନ ଭୂମି

"ଫୁଟନା, ସୁମନ, ତରୁ ଡାଳେ ମନ୍ଦ
ଏ ବୃନ୍ତୁ ବଦନ ଶିଖି;
ସମୀର ପ୍ରବାହେ ଉଡ଼ି, ତୋ କନକ
କେଶରେ ଲାଗୁଛି ଧୂଳି ।

ମୁହିଁ ସିନା ମାଟି ଘାସ ଏ ମହୀରେ,
ଧୂଳି ବିଲେପିତ କାୟା;
ଭୁ କିପାଁ, ଫୁଲରେ, ସରଗ ପ୍ରତିମା
ବନ୍ଧୁ ଏ କଲୁଷ ଛାୟା ?
ଉଚ୍ଚ ଉଚ୍ଚ ଡାଳେ, ପତ୍ର ଅନ୍ତରାଳେ
ରହ ଦବା ନିଶି ଲୁଚି,
ଉର୍ଦ୍ଧ୍ୱ ମୁଖେ ନଭ ବିମଳ ବିତାନେ
ସ୍ୱରୂପ ଅମୃତ ସିଂଚି ।"

ଖେଳ ନିମିଷକେ ଗଲା ତାଳୁ ଡାଳେ
କି ସ୍ୱର୍ଗ ପୀୟୂଷ ଗୀତି,
ସହସ୍ର ସୁମନ ତେଜି ତରୁ ଶାଖା,
ଭୂତଳେ ପଡ଼ିଲେ ଲୋଟି ।
ତଳ ଧୂଳିଲେପେ ମୃତ୍ତିକା ତଳପେ
ଧୂସର କଲେକ ତନୁ,
ତରୁଡାଳେ ସୁଖେ ସୁଧା ଢାଳିବାର
ବିଭବ ବିସୋରି ମନୁ ।
ଅନିଳ ପ୍ରବାହେ ଉଡ଼େ ଏବେ ଯେବେ
ଭୂତଳ କାଳିମ ଧୂଳି,
ତା କ୍ଷୁଦ୍ର ତନୁଟି ଶତ ଫୁଲ ରେଣୁ
ଆଳିଙ୍ଗନେ ଯାଏ ପୂରି ।

ଧୂଳି ପଥେ ଏବେ ପଲ୍ଲୀ ନବ ବଧୂ
ସଲଜ୍ଜ ସୋହାଗେ ଦୃହିଁ

ଗଲାବେଳେ, ଯାଏ ଫୁଲୁ ଫୁଲ ଅଙ୍ଗେ
    ମୃଦୁ ଚରଣଟି ଥୋଇ ।
ଅର୍ଦ୍ଧ ପିକଗାନ ଆଦରେ, ସୁମନ
    ଅର୍ଦ୍ଧେକ ଖେଳଇ ପୁଣି;
ଅଶ୍ରୁତ ସଙ୍ଗୀତେ ଉଚ୍ଛୁଳି ଉଠଇ
    ତରୁ ଧୂଳି ବନ ଭୂମି ।

ଗଛେ ଥାଇ କଢ଼ି ଅସ୍ଫୁଟେ କହୁଛି,
    "ମୋ ପାଳ ଆସୁଛି ଚଳି;
ଭେଦ ନାହିଁ ଲବେ, ଫୁଲ ଧୂଳି ବେନି
    ଏକ ଉପାଦାନେ ଗଢ଼ା ।
ଏ ବିଶ୍ୱେ, ଜଗତେ ବେନିଙ୍କର ଲାଗି
    ରହିଛି ସରଣୀ ଏକ;
ଏକ ଲକ୍ଷ୍ୟ, ଏକ ଅନନ୍ତ ମିଳନ,
    ଯାହାର ସେ ହେଉ ଭେକ ।
ଆମେ କଢ଼ି ମିନା ଝୁଲୁଅଛୁ ଡାଳେ;
    ଭୁଲିଲେ ଲୋଟଇ ଧୂଳି;
ଜଗତର ଶ୍ରେଷ୍ଠ ସମ୍ପଦ ଲୋଡ଼ୁଛି
    ବେନିଙ୍କର କୋଳା କୋଳି ।"

# ତୃଷାରେ ଆକୁଳ

ତୃଷାରେ ଆକୁଳ ଅତି ଭ୍ରମେ ମୁଁ କାତରେ;
ତନୁ ହାର ଯେନ, ପାଦ ତଳେ ନାହିଁ ଚଳେ ।
ଅଧେ ଉର୍ଦ୍ଧ୍ୱେ ଚଳପାଣେ ଛୁଡ଼ା ହୁଏ ଗୃହି;
ବନ୍ଧୁ ମାର ନେତ୍ରେ ମୋର ନ ପଡ଼ୁଛୁ କାହିଁ ।
ନ ଆସେ ଶୀତଳ ଧାରେ ବନ୍ଧ୍ୱ ସମୀରଣ,
ଶୂନ୍ୟ ଦେଶେ ନାହିଁ ଉଡ଼େ ଏକ ବିହଙ୍ଗମ ।
ଅନ୍ତମେ କରଣ ଆଶା ମରୀଚିକା ଜଳ,
ସେ ଦୃଷ୍ଟା ଖେଳଇ ନାହିଁ ଦୂର କର ତଳ ।

କୁଣ୍ଠିତ ଚରଣେ ଗୁରୁ ଚରଣ ଓଁକାର,
ଅତି କଷ୍ଟେ ଖଣ୍ଡେ ଦୂର ଯାଉଥାଏ ବୃଳ ;
ପାଶେ ମୋ ପରଣ ସଖା ଆକୁଳ ମଣ୍ଡନେ,
ଦାରୁଣ ପିପାସା ଶୁଷ୍କ କାଳମ ବଦନେ ।
ଏ ସନ ସମୟେ, ମୋର ଏ ଦୁଃଖ ବିକଳେ,
ପିଲାଟିଏ ଉଭା ତହିଁ ପାଖ ତରୁ ତଳେ ।
କମିତକେ ପାସୋର ଯେ ଗଲା କେତେ କଥା,
ଅଧେ କଢ଼ଗଲା ମୋର ପିପାସାର ବ୍ୟଥା ।
ଦେଖୁଛୁ ନୟନେ ମୁହିଁ ତା ପ୍ରତିମା ପାଶେ,
ପାଣି ମାଗିବାକୁ ବାଣୀ ମୁଖେ ନାହିଁ ଆସେ ।
କରେଖି ରୂପ ମୋ ଅବା କ ବୁଝିଲା ସେହୁ;
ହାତେ ଜଳ ପାତ୍ର ଯେନ ଧାଇଁଗଲା ତହୁଁ ।

ମୁଁ ଯେବେ ଭୂଲକ ଆନ୍ଧା କପାଁ ଗଲ ଗୃଳି,
କେଉଁର ଆସି ମୋ ଲଗି ସେ ଜଳ ଦେଲ ଢାଳି ।

ଧରି ଜଳ 'ଧା କରିବି' ମନେ ଭାଳୁଥାଇ;
ପିଇଥାନ୍ତି, କଣ୍ଠ ମୋର ଯେ ପିପାସା ନାହିଁ ?
'ପିଅ' ବୋଲି କହିଲାନ୍ତି ପିଇଲି ମୁଁ ଜଳ;
ଆହା ସେ ସୁଖର ଧନ ମୋ ପ୍ରାଣ ଦୁଃଖର ।
ତା ବଦନେ ଟଳ ଟଳ ରହିଥାଏ ଚାହିଁ;
ଅଧରର ପଦେ କଥା ଫୁଟି ଉଠେନାହିଁ ।
ସମ୍ପଦେ ତା ଦତ୍ତ ଜଳୁ ଶତ ଗୁଣ ବଳି,
ପିଇଲି ନୀରବ ହୃଦେ ସେ ସ୍ୱର୍ଗ ମାଧୁରୀ;—
ତା ବଦନେ ଦର ହସ, ତା ଅଙ୍ଗର ଠାଣି;

ଦୟା ସ୍ନିଗ୍ଧ ତା ନୟନେ ଢଳଢଳ ଚାହାଣି ।
ନୀରବେ କେତେକ ଦୂର ଠିଆ ହେଲି ଚାହିଁ;
ନୀରବ ଚରଣେ ତାଶୁ ଆସିଲି ଚଳାଇ ।
ସଖାଙ୍କୁ କହିଲି ପଥେ ଯେତେ କଥା ତାର,
ଶତ ଗୁଣ ରହିଗଲ ହୃଦେ ଆପଣାର ।
ସେହି ପିଲ ସେହି ତଳୁ ତଳେ ତହିଁ ଠିଆ;
ଏ କି ଆନ ଭାବେ ଏବେ ଉଛୁଳେ ମୋ ହିଆ !

ଏବେ ଯେବେ ଜଳେ ମୁହିଁ ତୃଷାରେ କାତର,
ସେ ପାଣିର ସ୍ମୃତିଟିକେ ହୁଅଇ ଶୀତଳ ।

ଖ୍ରମ ମରୁ ପ୍ରାନ୍ତେ, ତପ୍ତସିନ୍ଧୁ ସଇକତେ,
ନମିଷକେ ଦେଖାଦିଏ ସେ ତରୁ ଗୁପତେ ।
ସେଛ୍ୱ ପିଲ୍ ଜଳ ଧାର ମୁଖେ ଦିଏ ଢାଳି,
ଦିର ହସେ ମୋ ନବଣା ପଲକେ ନବାର ।
ସେହ୍ନ ଦିନୁ କ ଘଟେ ବା ଭର ଏ ଅନ୍ତର,
ପାଷାଣ ଶଇଳୁ ଝରେ ପୀୟୁଷ ନର୍ଝର !
ପରଣେ ପିପାସା ମୋର ନୁହେ ଅନୁଭବ,
ଘୋର ଗ୍ରୀଷ୍ମେ ଆସେ କାହୁଁ ଆଳପ ମାର ସ୍ରବ ।
ଦାରୁଣ ନୈରାଶ୍ୟେ ହୁଏ ଆଶାର ସଞ୍ଚାର,
ସ୍ୱର୍ଗ ସମ ଲାଗେ ମୋତେ ମୃଣ୍ମୟ ସଂସାର ।

## ଅନାଇଁ ବସିବ

ବଜନ ପ୍ରାନ୍ତରେ ଏକାକୀ ପଥିକ
ମଉନେ ଯାଉଛି ଚୃଳି;
ଘଡ଼ରୁ ଘଡ଼ିକ ବଢୁଛି, ଜ୍ୱଳୁଛି
ଦିଗ୍‌ବଳୟେ ଅଂଶୁମାଳୀ ।
ରଡ ରଡ ଏବେ ପ୍ରକୃତୀ ଶଉଳେ
ହୁଅଇ ତପନ ଆସି,
ବ୍ୟୋମ ପାଟଳମା ଧଉତ ବଦନେ
ଚପଳେ କଂପନେ ହସି ।
ତରୁ ଲତା ତୃଳେ ଡାହାଣିଆ ଟେର
ଡକୁଛି କ ଘଟେ ଆହା,

କନକ ଚରଣେ ବଣ ବନ ଚଦା
ବଟାଳ ଶ୍ୟାମଳ କାୟା !

"ଲୋଡ଼ୁଛି ମୋରେ ଯେ ପ୍ରଜାରୀ ବସୁଧା;
ଯିବ ମୁଁ ଭୁଚ୍ଛେଡେ ଗୃଳା,
ଘାନ୍ଥୁ ହୃଦ ଯେନା ସାୟାହ୍ନ କାଳମା
ତୋ ଚଥେ, ପଥିକ, ଡାଳ ।
ଏ ଯେତେ ବନ୍ଧଗ ଜଡ଼ାନ୍ତ ଜ୍ଞଥେ
ପ୍ରଦୋଷ କାକଳି ଗାଇ,
ବନାନ୍ତ ନମିଷେ ଯେନନ୍ତ ମେଲ୍ଲି,
ଯିବ ମୁଁ ସଙ୍ଗତେ ନେଇ ।
ଦେଇଯିବ ତୋରେ ଡାମସ ଜଡିତ
ଶୀତଳ ଅନଳ ଧାର,
ମୃଦୁ ଗନ୍ଧେ ଯହିଁ ଚଳୁଥିବ ଚନ୍ଦ୍ର-
ସେନେହ ସୁମନ ଭାର ।
ଶୋଇବୁ, ପଥିକ, ଗଛ ଛାଇ ତଳେ,
ଶୁଣି ସେ ତାନ ମୋହନ;
ଗୋଟି ଗୋଟି ଫୁଲ ପେଷି ଦେବ ଶାଖା,
ନଶି ପ୍ରୀତି ଉପାୟନ ।
ମୃଦୁଳ ସଚନେ ହେଲବୁ ନମିଷେ
ଯେତେ ତୋ ଅଙ୍ଗଡ ଶିଖ,—
ବନ୍ଧୁ ପ୍ରିୟ ଜନ ଚରଣ ସଖାଳ,
ଟହିମା କାନନ ଗିର ।"

"ଯେତେ ଦେଇ ଯିବ ଜଗତ ଅତୁଳ
ସୋହାଗ ସଂପଦରାଶି;
ତବ ବନେ ସବୁ କଢ଼ ନ ବଢ଼ିବ,
ଦୂର ଅନ୍ତରୀକ୍ଷବାସି ।
ନଶୀ ନଦ୍ରା କୋଳେ ଥାପି ଶିର ହେଲେ
ଶୋଇବାର ଛନ୍ଦ ମୋର;
ନମିଷ ସପନେ ନୂଆ ନୂଦେ କରୁ
ଭଲ ମନ୍ଦ ଦେଖିବାର ।
ମଧ୍ୟାହ୍ନ ଗ୍ରୀଷ୍ମେ ଗଛ ଛାଇ ତଳେ
ଛାଇ ପଥଶ୍ରାନ୍ତ ତନୁ,
ଶୀତଳ ମଳୟ ବାତେ ଯେ ଲୋଟଇ,
କେ ସୁଖୀ ମଞ୍ଚେ ସେ ଜନୁ ?
ଶ୍ରବଣ କୁହରେ ନଦ୍ଦର ସଂଗୀତ
ଉଚ୍ଛୁଳେ ପରଶି ହାଅ;
ଗୁଣୁ ଗୁଂଜ ଗୀତ ଅଳ ସୁଧା କଣ୍ଠୁ
ଛନ୍ଦଇ ସପନ ମାଧୁ ।
କେତିର ଲେପିତ ଫୁଲ ଗୋଟି ଗୋଟି
ଝଡ଼ଇ, ବଟପି ତାର,
ମୃଦୁ ଘାତେ ନଦ୍ଧ ପାନ୍ଥ ସୁପ୍ତ ଭାଲ
ଶିଶ୍ର ଶବଳିତ ଲ୍ଲଳା ।
ବନ୍ଦୁ ବନ୍ଦୁ ସ୍ୱେଦ ନର୍ଝର କପାଳେ
ଆତପ ବଳାସ ସୁଖେ,
ରଚେ ତବ କରେ ମୁକ୍ତାହାର, ରବ,
ପଥିକ ଉଦାସ ମୁଖେ ।

ସେତେବେଳେ ସ୍ୱିନା କାନନ ସମୀରୁ
କାକଳି ଝିଲ୍ଲିଗୀ ଧାର,
ମଞ୍ଜୁଳ ଚରଣେ, ପ୍ରୀତି ଛନ୍ଦଯୋଗେ,
ଆନନ୍ଦରେ ମାଧୁରୀ ଢାଳ ।
ସେ ଶୋଭା ସହିତେ ହସି ଦେବା ଲାଗି
କି ଅଛି ମରତେ ଆଉ ?
ଭୁବନ ବୁଡ଼ିଗଲେ ପ୍ରହରୀ ଗର୍ଜନେ,
ସେ ସ୍ମୃତି ମିଳିବ କାହୁଁ ?
ଯହିଁ ଯିବ, ରବ, କାନନ ପ୍ରାନ୍ତର
ଶୁଣିବ ସେ ମଧୁଷ୍ଟିକେ;
ପ୍ରାଚୀ ଭାଲେ ପୁଣି ସେଭଳି ହେଲା ଘାଏ,
ଅନାଇଁ ବସିବ ଠିକେ ।
ନିଶୀଥ ସ୍ୱପନ ନେବ ସେ ଧିଆନ,
ଚଳନ୍ତ ଗଗନ ତଳେ;
ଯାଅ ଏବେ, ରବି, ନେଉଛି ମେଲାଣି,
ଉଡ଼ୁର ଦେଉଛି ବେଳ ।
ବତ୍ସ, ଚିରନ୍ତନ କର୍ମ ଫଳ ତବ
ସାଧିବ ଅଲକ୍ଷଗତେ,
କୋଟି ଜନେ ପୂଜି ଏ ମର୍ତ୍ତ୍ୟମଣ୍ଡଳେ
ଟେକିବ ଚରଣ ମାଥେ ।"

# ଯାଅ ସ୍ମୃତି

କେତେ ଆଉ ଚାହିଁବ ନୟନ୍ନ ?
ଦିବସ ଯାମିନୀ ବନ୍ଦ ସେ ଆସାର,
ଚହିଁ ଏବେ ଗଣ୍ଡ ପାଦ ତଳ ଯାଏ
ଛନ୍ଦିଗଲାଣି ତନୁ,
ଧଉଡ ହେଲାଣି ଚହିଁ କେତେ ମସିଗାର;
ହେଲେ, ସେ ମୋ ସ୍ମୃତିଟିକ ନ ନଇଲା ମନୁ ।

ଯିବାର ସପଦ ଯାହା ସବୁ ତ ଗଲାଣି
ଗୋଟି ଗୋଟି ହୋଇ;
ଛୁଦ୍ମା ମାଳ କଥା ତେବେ ରହିଅଛୁ ପୁଣି,
ମେଲାଣି ନ ନେଇ ?
କେତେ ଦିନ ଏହି ଚ୍ଛାୟା ଧରିଥିବ ପ୍ରାଣେ ?
କେତେ ଦିନ ଏ ଭାବନା ପୋଷିଥିବ ମନେ ?
କେତେ ଦିନ ଅନାଇବ ଆକୁଳ ନୟନେ
ସେ ମୋ ଅତୀତ ସପଦ ଲାଗି,
ସେ ସଂପଦ ଲଭିବାରେ
ଆଶା, ଏ ହୃଦୟେ ଉଠି, ରହୁନାହିଁ ଜାଗି ?

ଯିବାର ସଂପଦ ସେ ସେ ଗଲାଣି ତ ଚାଲି
କେଉଁ ଅଜଣା ସୁଦୂରେ;
ରହିଲାଣି ଯାଇ କେଉଁ ଗୁପତ ନିଦେଶେ,
ଆଉ ପୁଣି ନ ଫେରିବ ବାରେ ।

ସ୍ମୃତିଚିହ୍ନ କଅଁା ତେବେ ରଖିଗଲ ଏଥି ?
ସେ ସ୍ମୃତି ପୀଡ଼ନେ ଝର
ବହି ନେତ୍ର ନୀର ଧାର,
ଏତେ ଦିବସ ଯାମିନୀ ମୋର ଯାଉଅଛି ବିତି ।

ରହିଥାଏ ମୁହିଁ ଏବେ ଉଦାସ ପରାଣେ;
ଉଇଁ ନଭେ ତାରା ଶଶୀ
ପ୍ରଭାତେ ଯାଆନ୍ତି ମିଶି;
ଶୀତଳ ସମୀର ବହି,
ଯାଏ ମୋ ପରାଣ ଛୁଇଁ;
ଗାଇ ଗୀତ ବିହଙ୍ଗମ
ଉଡ଼ିବୁଲେ ଅନୁକ୍ଷଣ
ଏ ମୋ ଘାନ ମଥା ପରେ
ଜୀବନ ସୌରଭ ଭରେ;
ହେଲେ, କି ସେ କରନ୍ତି, ମୁଁ ବୁଝେନାହିଁ ଦିନେ ।
ସବୁ ଦେଖୁଥାଏ ବସି,
ସବୁଥିରୁ ନେତ୍ର କଲୁ ଚଳିଯାଏ ଖସି;
ମୋ ସ୍ମୃତି ବିନେ ମୁଁ ଅନ୍ୟ କିଛି ହିଁ ନ ଜାଣେ ।

ଏବେ ଆଉ ନୀର ନ ଗଡ଼େ ନୟନୁ;
ବେନି ନୟନର ବେନି ତୋଳା ତଳେ
ନୀର ଭଣ୍ଡ ବେନି ଶୁଖି ସେ ଗଲାଣି;
ମୋର ବଞ୍ଚିବା ମରିବା ଏବେ ଆସି ରହିଲାଣି
ଏକ ସମସ୍ୟା ନଗଡ଼େ;

ନହିଁ କହିବ ଅବଶ ମୋ ତନୁ,
ଚିତ୍ତ ନିମଜ୍ଜିତ ମୋର ବିଷାଦ ସାଗରେ ।

ଏତେ ବେଳେ କାହିଁ ମୋର ଗଢ଼ିବ ନୟନୁ ?
କମ୍ପଇ ବା ଏ ଜଗତେ ଉଦ୍ଭବ ଏ ତନୁ,
ଯାବତ ନୋହିଛୁ ଜୀର୍ଣ୍ଣ ମୁକତି ମୋ ମନୁ ?

ଯାଅ ଦେବ୍ୟେ, ସୁନ୍ଦର ଜଗତେଇ ତୁରିତେ;
ଆଉ ତୋତେ ଫେରାଇବାର ପାଇଁ
ମୋ ପ୍ରାଣ ଭଣ୍ଡାରେ କିଛି ଧନ ରତ୍ନ ନାହିଁ ;
ଯାଅ, ଚିର ମୁକତିକି, ତୋ ଯିବାର ପଥେ ।

## ସିନ୍ଧୁତୀରେ

"ବୁଡ଼ି ଯାଅ, ରବି, ବୁଡ଼ି ଯା ତୁରିତେ,
ଏ ମୁଖ ସୋହାଗ ସାରି;
ମହା ସିନ୍ଧୁ ପାରେ ଉହ୍ଲାଳ, ଯାଅ ତୁ
ଅନନ୍ତ ପାତାଳ ପୁରୀ ।
ଯାହା ଭୁଲେ ତୋତେ ଦେଖୁଥିଲି ନିତି
ଏ ବେଳା ତୁଳେ ମୁଁ ଆସି
ସେ ତ କେତେ ଦିନୁଁ ଯାଇଛନ୍ତି ଚଳି,
ଦୂର ଦେଶ ପରବାସୀ ।

ଏ ଦେଶାନ୍ତ୍ର ଏକା ମୁଁ ସ୍ୱଜନ ସମ୍ମୁଖରେ
ରୋଦନ ନ ପାରେ ଧରି;
ଯେତେ ଦିନ ସେଠୁ ଫେରି ନ ଆସିବେ,
ମତି ମତି ଯାଅ ବୁଡ଼ି ।”

ଦୂର ଚଳି ରବି ମନ୍ଦା ସିନ୍ଧୁ ପାରେ,
ନିମିଷେ ଲୁଚାଇ କାୟା;
ସାଗର ଲହରୀ ଖେଳଇ, ବୁକେ ତା
ଆହରି ସାୟାହ୍ନ ଛାୟା ।
ପଶ୍ଚିମ ଗଗନ ପାଟଳ ସଂପଦ-
ଟିକି ବଢ଼େ ଶେଷ ଟିକ
ବଉଦ ନକ୍ଷତ୍ରେ, ଉଇଁ ତରଙ୍ଗରେ,
ନ ରହିଲା ନିମିଷେକ ।
ବାଳକ ବାଳିକା ଯୁବା ଯଉବନୀ,
ଯେ ବାଲି ବତାନେ ଆସି,
ବୁଲୁଥିଲେ ଯେତେ ସରସ ଚରଣ
ପର୍ଦ୍ଦେ ଛୋଟ ପଦକାଣି,
ରଜନୀ ତାମସ କାଳିମ ଅଚେମ
ଢୋଇ ସେ ଗଲେ ଅନ୍ତର;
ଜନ ପ୍ରାଣୀ ଆଉ ନାହିଁ ସେ ପୁଳିନେ,
ମୁଁ ଏକା ନିରେଖ ନର ।
ସାଗର ସୈକତେ ଏକା ବୁଲିବାର
ନୁହେଁ କଷ୍ଟ ନୂଆ ମୋତେ;

କୈଶୋର ବୟସେ ସଞ୍ଜ ସକାଳେ ମୁଁ
ଯାଇଛି ସେଠାବେ କେତେ ।
ବିଜନ ବନ୍ତେ ମୁଁ ବାଲି ଆସ୍ତରଣେ
ନବସି ମଉନନ୍ଦରେ,
ପୁଳିନ ଲହରୀ ଯୁଗ୍ମ ଆଲିଂଗନ
ଦେଖିଛି ଗଗନ ତଳେ ।

ବସି ରହୁଥାଏ, ପୂର୍ବ ଗଗନେ,
ସରଗ ପୀୟୂଷ ଜଣି,
ସିକତା ସକଳେ ରଜତ ମାଧୁରୀ
ସିଞ୍ଚୁଥାଏ ନଶାମଣି ।

ଅନନ୍ତ ସାଗରେ ଦୂର ଦୂରେ ବଳ
ଉଠି ଯାଉଥାଏ ଊର୍ମି;
ଅଧବୁଝା ତାର ସକଳ ସଂଗୀତେ
ସିକ୍ତ କରି ତୀର ଭୂମି ।

ମୁହିଁ ଏକା ମର୍ତ୍ତ୍ୟ ମାନବ ଦେଖଇ
ଭୂତଳେ ଜଳଧି ଲୀଳା;
ଅନନ୍ତ ଗଗନୁ ନସର୍ଗ ଲୋକନେ
ଚାହୁଁ ଥାନ୍ତି କୋଟି ତାରା ।

ବଣାଳ ବାଲୁକା, ମିଳନ ସମ୍ପଦେ,
ପ୍ରସର ମୋ ଦେହ ପାଶେ,
କ ପୁଲକେ ଆତ୍ମା ନାଚି ଉଠୁଥାଏ
ସାଗର ଗୀତ ପରଶେ ।

"ଆସ ଆସ, ମୋର ଉର୍ମିମାଳା, ଉଠି,
ଏ ବେଳା ଯାଅ ରେ ଛୁଇଁ;
ବେଳା ଭୂମେ ଝେଲୁ ସାଗର ତରଙ୍ଗ
ସିନ୍ଧୁ ଅଙ୍ଗେ ବେଳା ଭୁଇଁ ।
ଏ ଯେ ନଦୀଗୋଟି ଧୀର ମନ୍ଥନେ ତା
ଟେକଇ ମୋହନ ମଥା,
ନମିବେ ପୁଣି ମଥା ଢାଳଦେଇ,
କେତେ ନ କହିବ କଥା !
ତା କଥାଟିମାନ ଚପ ଚପ ହୋଇ
ଅନନ୍ତ ଅପର ପାରେ
ଖେଳିଯିବ ଆହା, ନମିଷ ନ ସରୁ,
ସାଯ୍ୟାହ୍ନ ନଭ ଉତ୍ତାଳେ ।
ଏଯେ ଚନ୍ଦ୍ରମାଟି ପୂର୍ବବ ଗଗନେ
ଉଠୁଛି ସଳଜ୍ଜେ ଗୁହିଁ,
ଅସୀମ ଯେ ପାରେ ଜାଳୁଥିବ ମଧୁ,
କେତେ ଦୂର ପଥେ କାହିଁ ।
ଅନନ୍ତ ଯୁଗଳ ପାଣେ ବେଳା ବେନ
ହସଇ ଅବଶ ସାରା,
ଏକ ହୋଇ ଏବେ ଯାଉଛନ୍ତି ହେଲେ,
ଆଣି ମୋର ଉର୍ମିମାଳା ।
ଯେ ଦୂର ରାଇଜେ ଥିବେ ସେନ୍ତୁ ମୋର୍
ଆହା ସେ ଏତେ ନକଟ !
ଅନନ୍ତ ମେଳାପେ ଏ କ୍ଷୀଣ ଜୀବନେ
କେବେ ପୁଣି ହେବ ଭେଟ ?

ଏ ବାଲି ବଢାନେ, ବାଲି ରେଣୁ ହୋଇ,
ମିଶି ମୁଁ ଯାଆନ୍ତି ହେଲେ;
ଅସୀମ ଅମ୍ବରେ ଗମନ୍ତ ସେ ଦେଶେ
ଊର୍ମି ବାର ବନ୍ଧୁ ମେଳେ।
ଚନ୍ଦ୍ରମା କିରଣେ ଶୂନ୍ୟ ଅନ୍ତରୀକ୍ଷେ
ଉଭେଇ ଯାଆନ୍ତି ତହିଁ,
ଏ ମର୍ତ୍ତ୍ୟ ଗାଇକୁ ସେ ଅମର ପୁରେ
ଚଳୋ ବିକାଶେ ଶୋଭା।
ବୁଡ଼ି ଯାଆ, ଶଶୀ, ବୁଡ଼ଯା ତୁରିତେ,
ଏ ସୁଖ ସୋହାଗ ଭୁଲି;
ମହା ସିନ୍ଧୁ ପାରେ ଓହ୍ଲାଇ, ଯାଆ ତୁ
ଅନନ୍ତ ପାତାଳ ପୁରୀ।
ଗଗନ ବିସ୍ତାରେ ଯେତେ ଯେତେ ଅଛ,
ଉଜ୍ଜଳ ତାରକାଗଣ,
ବ୍ୟୋମ ଅନ୍ତରାଳେ ସେ ଅନନ୍ତ ବର୍ତ୍ମେ
ଯାଅ ରେ ଲୁଚି ବଦନ।”

ଧୀରେ-ଧୀରେ ଭାସି, ଗାଳ ନଭେ ଶଶୀ
ଢାଳଇ ଉଜଳ ଧାର;
ଗୋଟିଏ ତାରକା ନ ଲୁଚିଲା କାହିଁ,
ଖେଳେ ଗାଳ ଊର୍ମିମାଳା।
ଦେଖିଲି, ସେ ମଧ୍ୟ ମୋ ପ୍ରାଣ ସୁହୃଦ,
ଅମୀୟ ଆଲୋକେ ଢାଳି,
ଜଳେ ସ୍ଥଳେ ନଭେ ଉଭା ରହିଛନ୍ତି,
ନେତ୍ରେ ମୋର ପ୍ରତିଫଳି।

# ଯାଉଛି

[କବିଙ୍କ ଜନ୍ମସ୍ଥାନର ନାମ ଶାଳଆ ଓ ଚନ୍ଦ୍ରଭାଗା ଘଣ୍ଟଶିଳା । କବି ପାଠ ପଢ଼ିବା ନିମନ୍ତେ ୧୯୦୧ ମସିହାରୁ ୧୯୧୩ ମସିହା ପର୍ଯ୍ୟନ୍ତ, ଦୀର୍ଘ ତେର ବର୍ଷ କାଳ, ପ୍ରବାସରେ ବିଭିନ୍ନ ସ୍ଥାନରେ କଟାଇଲେ । ତା ପରେ ବୋଧହୁଏ ପ୍ରବାସରୁ ଫେରି, ଜନ୍ମସ୍ଥାନରେ ରହିବେ ବୋଲି, ଆଶା କରିଥିଲେ । କିନ୍ତୁ ତାଙ୍କର ସେ ଆଶା ସଫଳ ହେଲା-ନାହିଁ । ପାଠପଢ଼ା ସରିବା ସଙ୍ଗେ, ତାଙ୍କୁ ଜନ୍ମସ୍ଥାନ ଛାଡ଼ି ସତ୍ୟବାଦୀ ବିଦ୍ୟାଳୟରେ ଯାଇ ରହିବାକୁ ପଡ଼ିଲା । ତାଙ୍କ ଯୌବନର ପ୍ରିୟ କର୍ମଭୂମି ସତ୍ୟବାଦୀ ଯିବା ନିମନ୍ତେ ଜନ୍ମସ୍ଥାନରୁ ବିଦାୟ ନେବା ବେଳେ ଏ ପଦ୍ୟଟି ଲେଖା ଯାଇଥିଲା ।]

ଯାଉଛି, ଗୋ ମାଆ, ଆଜି ବରଜି ତୋ କୋଳ,<br>
ନିଜ ମନେ ଅରଜିଲି ବିଦେଶକୁ ମୋର ।<br>
କିଭଳି ବିଦେଶ ସେ ଯେ, କି ସମ୍ପଦ ତହିଁ,<br>
ସୁଖ ଦୁଃଖ ଭଲ ମନ୍ଦ କିଛି ନ ଜାଣଇ ।<br>
ଯେ ମୋହନ ଅନୁସରି ଯାଉଅଛି ଚଳି,<br>
ତୋତେ ଛାଡ଼ି ଯିବା କି ଗୋ ସାର ହେଲା ଖାଲି ?<br>
ଆଉ କି, ମା, ନ ଗାଇବ ତୋ କୁଞ୍ଜେ କୋକିଳ<br>
ମୋ ପାଇଁକି, ନ ବହିବ କଳକଳେ ନୀର ?<br>
ମେଘମାଳା ଗିରି ଚୂଳେ ନ ଖେଳିବ ଆସି ?<br>
ହଗନ୍ତ ମାଧୁରୀ ନଭେ ନ ଉଠିବ ଭାସି ?<br>
ନ ହସିବ ସତେ ଆଉ ବନ ଦେଶେ ଫୁଲ ?<br>
ମୋ ପାଇଁ ନାଚିବ ନାହିଁ କାନନେ ମୟୂର ?<br>
ଏତେ ଶୋଭା ସୁଖ, ମା ଗୋ, ଏତେ ନିଧି ତୋର,<br>
ବିଷ୍ଟ ଶିଖା ବିସ୍ମନେ କି ଭିଜେ ନୁହେ ମୋର !

ବାଲ୍ୟର ବନ୍ଧନେ ଯେବେ ଉଡ଼୍‌ସୁଚ୍ଛ ଜୀବନେ
ବୁଲୁଥିଲି ମନମାନେ ସଖୀଙ୍କ ଗହଣେ,
ଶିଖର ଶିଖରେ ଅବା କାନନେ କାନ୍ତାରେ,
ନଦୀତଟରେ କବା ସୁବର୍ଣ୍ଣ ଧାନ ବିଲମାଳେ;
ତୁମେ ସେତେବେଳେ ଥରେ ନ ଥିଲ ଜୀବନେ,
ସେସବୁ ସମ୍ପଦ ଦିନେ ତୁଟିଯିବ ଭାବିଲି ।

ଧାନ କଟା ବେଳେ ଯେବେ ଅନ୍ତ ପିଲା କାଳେ
ଅଳି କରି ଯାଇ ଦିନେ ଥିଲି ବିଲମାଳେ,
ତହିଁ ଖିଆ, ତହିଁ ଖେଳ, ତହିଁ ନାଚ ହସ
ଚଷା ପୁଅ ଭୁଲେଇ କଲା ମୋ ସାରା ଦିବସ ।
ସଞ୍ଜ ବେଳେ ମନ ତୋଷେ ବାହୁଡ଼ିବା ବାଟେ
ପରାଣ ମିତଣୀ ମୋର ଦେଖିଲି ଏକାନ୍ତେ ।
ମୁହିଁ ପିଲା, ସେହୁ ପିଲା, ଦେହିଏ ବାଳୁତ;
ଦେହି ରୂପ ଦେଖି ଦେହି ନେତ୍ର କଲୁ ପୂତ ।
ଏବେ ଯେବେ ପଡ଼େ ସ୍ନେହ ଅତୀତ ବାରତା
ଦେହିଏ ଦେହିଙ୍କୁ କହୁ ସେ ଦିନର କଥା ।

ସେହି ଦିନୁ ବଢ଼ିଛି ମନେ କେତେ ଥର,
କାଳ ସ୍ରୋତେ ମୋ ଦିନଟି ଫେରନ୍ତା ନକର !
ବରଷ ବରଷ ହୋଇ ବିତିଗଲା କେତେ;
ସେ ଦିନ ନ ଆସେ ଆଉ ଲୋଡ଼ୁଛି ମୁଁ ଯେତେ ।

ଯେତେ ସୁଖ ଶବ୍ଦ, ମା ଗୋ, ଦେଖିଲି ଭବେ,
ସେ ସକଳୁ ନ ମିଳିଲା କଣିକାଏ କେବେ ।
ପିଲଟି ଦିନୁ ମୋ ଏକା ପରଦେଶେ ବାସ ;
ଏବେ ବାହୁଡ଼ିବା ବେଳେ ସକଳ ନିରାଶ !

ଯାଇଛି, ମା; ନାନା ସୁଖେ ରାଜ ହର୍ମ୍ୟେ ଥିଲେ,
ଏ କୁଟୀର ଦୁଖକୁ ମୁଁ ନ ଭୁଲିବି ଭଲେ ।
ମେଘାସନେ, କପିଳାସେ, ମହେନ୍ଦ୍ର ଶିଖରେ,
କୋଣାର୍କ ମିକତା ବନ୍ତେ, ମହୋଦଧି କୋଳେ,
ବୈତରଣୀ, ଶଙ୍ଖୋପ୍ଳା, ଋଷିକୁଲ୍ୟା ତଟେ,—
ଯହିଁ ଯେବେ ଭ୍ରମୁଥିବ ଚରଣ ଉଷତେ;
ସେତେବେଳେ ନେତ୍ର ମୋର ଚାହୁଁଥିବ ହେଜ,—
'ମୋ ସାଳଆ, ଘଣ୍ଟିଳା ଆସିଛି ମୁଁ ତେଜ' ।
ଛୋଟେ ଗୁଡ଼ି, ମା ଗୋ, ସତ ଯାଉଛି ପ୍ରବାସେ;
ମୋ ମନ ଜୀବନ ଗୋଟି ରହିଲା ତୋ ପାଶେ ।

# ସ୍ମୃତି

[ ଶ୍ରୀ ପଞ୍ଚମୀ ସମୟରେ ସରସ୍ୱତୀ ଓ ହରିତାଳିକାରେ ଗଣେଶ ମୂର୍ତ୍ତି ନେଇ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନେ ପ୍ରାୟ ଅଢ଼େଇ କୋଶ ଦୂରକୁ, ଭାର୍ଗବୀ ନଦୀରେ ବିସର୍ଜନ ଦେବାକୁ ଯାଉଥିଲେ । ମଝିଥିବା ଛୁଟିଟି ଛାତ୍ରାବାସରେ ରହୁ ନ ଥିଲେ; ନିଜ ଗ୍ରାମରେ ରହି ବିଦ୍ୟାଳୟକୁ ଆସୁଥିଲେ । ସେ ଗ୍ରାମର ଶ୍ମଶାନ ଭାର୍ଗବୀକୁ ଯିବା ବାଟରେ । ]

ବକୁଳ ତମାଳ ମୋହନ ନିକୁଞ୍ଜେ
ନିକୁଞ୍ଜ କୁସୁମ ଚିତ୍ର
ଗୁରୁଙ୍କ ଗହଣେ ଚଳନ୍ତି ନିବସି
ବ୍ରହ୍ମଚାରୀ ଅଗଣିତ ।
ସୋଦର ବେଶରେ ଏକେ ଆନେ ମିଳି,
ଉଚ୍ଚନ୍ତି ସରଗ ଭୂଇଁ;
ସେ ସବୁ ସମାନେ ଅଛନ୍ତି କି ସୋଦର
ନଖିଳ ମରତେ କାହିଁ ?

ନିକୁଞ୍ଜ ବୃନ୍ତୁ ସେ ଚଢ଼ିଲା କି ଅବା
ଅକାଳେ କଳିଟି ଝଡ଼ି;
ସୋଦର ସେନେହ ବନ୍ଧନ ଛୁଟାଇ,
ଗଲା ଦିନେ ଜଣେ ଚଳି ।
ନୟନ ଲୋତକ ପୋଛୁଁ ପରସ୍ପରେ,
ଅପର ସୋଦର ଯେତେ,

ଅନଳେ ତନୁ ତା, ବିଚୁରନ୍ତ ବହ୍ନି,
ଜାଳି କି ଦେବେ ସେ ସତେ ।
ବିନେ ତ ନିକୁଞ୍ଜେ ଚରଣି ନାହାନ୍ତି
ମରଣ ନିଠୁର କର;
ବୁଝିବେ କପରି, ହୋଇଗଲା ଭାଇ
ନେତ୍ର ଶ୍ରୁତି ଅଗୋଚର ?
କେତେ ବେଳେ ପୁଣି ଅଙ୍ଗାର ପାଉଁଶେ
ସୋଦର ସ୍ମୃତିଟି ଚିହ୍ନ,
ଶ୍ମଶାନ ଅନଳେ ଉଦାସ ଆକୁଳେ,
ଜାଳି ଶବ ଦେଲେ ନେଇ !

ଆଶ୍ରମ ବିପିନେ କରମ ବିରାମେ
ସୋଦର ସୋହାଗେ ମେଳେ,
ବୁଲନ୍ତି ଭାଇଟି ହତ ସେ ଯିବାର;
ନାହିଁ ଏ ମରତ ପୁରେ ।
ସେହି ସ୍ମୃତି ପୁଣି ହୃଦୟ ପରଶେ
ଘୋଟଇ ଭାଇଙ୍କ ମନ,
ଯେତେବେଳେ ଯହିଁ ଶ୍ମଶାନ ବାଟେ ସେ
ଚଳନ୍ତ ଶିଶୁ ଚରଣ ।
ଆଶ୍ରମୁ ଅନ୍ତର ହେଲେ ସେ ନିମିଷେ
ବାହୁଡ ବିହାର ଛାଡ଼ି,
ସୋଦର ସ୍ମୃତିଟି ନ ପାରନ୍ତି ଲଭେ
କୋମଳ ହୃଦୟୁ ଧରି ।

ଅନେକ ଉତ୍ସବେ ମାତି ହସ ଖେଳେ,
ଆଶ୍ରମ ବାଳକ ଗଣ
ନଦୀ ପୁଣ୍ୟ ଘାଟରେ ବୁଲାଉଛନ୍ତି ସୁଖେ,
ସ୍ୱଭାବେ ଉଦାସ ମନ ।
ସୋଦର ଶୋଭନ ଚିତା ଅବଶେଷ
ଦେଖିଲେ ନମିତେ ଚାହିଁ;
ଯେବେ ତା ଅଙ୍ଗେଭିତେ ହେଲେ ବୋଲା ବୋଲ
ଅଙ୍ଗେ ସେ ସକଳ ଭାଇ ।
ବାଳୁକା ଅନନ୍ତ ସେନେହ ଜଡ଼ିତ
ଅସ୍ଥି ଖଣ୍ଡମାନ ତୋଳି,
ବୁଲାଇଲେ, ଦୋଷର ଉତ୍ସବ ସମ୍ପଦ
ଅଧିକ ହୃଦୟୁ ଭୁଲି ।
ଭାର୍ଗବୀ ସଲିଲେ ପଖାଳି ତନୁ, ସେ
ମିଶାଇ ପାଉଁଶ ଦେଇ,
ଜାହ୍ନବୀ ସ୍ରୋତରେ ତା ଅସ୍ଥି ଖଣ୍ଡିମାନ
ଭସାଇ ଦେଲେଟି ନେଇ ।

ସରଳ ଶିଶୁ ସେ, କାହୁଁ ବା ବୁଝିବେ
ଜଗତ ବନ୍ଧନ ଶିକ୍ଷା ?
ମାନବ ପରାଣେ ବାନ୍ଧିଛୁ ବିଧାତା
କି ପ୍ରୀତି ଅଛେଦ୍ୟ ଡୋର ?
ଛିଣ୍ଡାଇ ପାରନ୍ତା ନମିତେ ଯେବେ, ନ ମ
ହୁଅନ୍ତା କାଳ ଦୁଖୀ;

ନୟନ ଲୋତକ, ଅନ୍ତର ନିଶ୍ୱାସ
　　ସମ୍ବାଦ ପାରନ୍ତା ରଖି ।
ସେ ମହା ସମ୍ପଦେ ବନ୍ଧରନ୍ତା ମୁଦେ;
　　ବ୍ୟୋମ ବାୟୁ ବିସ୍ତୁରଣେ,
ରବି ଶଶୀ ତାରା ଅନନ୍ତ ବିସାରେ,
　　ନିଜେ ରହିଁ ହୋଇ ଜଣେ ।

ସରଳ ଶିଶୁ ସେ, କାହୁଁ ବା ବୁଝିବେ
　　ଏ ବିଶ୍ୱ ବିଚିତ୍ର ଲୀଳା ?
ଭବ ବନ୍ଧନର ଅଚ୍ଛେଦ୍ୟ ବନ୍ଧନ
　　ଜାଣି ଟି ନାହାନ୍ତ ପରା !
ସଂସାର ଉତ୍ସବ, ଆଶ୍ରମ ନିକୁଞ୍ଜେ
　　ରହିଲେ ସକଳେ ଫେରି,
ଗୁରୁଙ୍କ ସନ୍ନିଧେ ପଢ଼ି ପାଠ ନିତ୍ୟ,
　　ସଖା ସହଯୋଗେ ଖେଳି ।
ବାଲ୍ୟତ ପରାଣେ ହେଲ ସ୍ନେହ ଦାନୂ
　　କି ଭାବ ସଞ୍ଚାର ଆସି;
ବାଲ୍ୟ ସୁଖେ ଦୁଃଖେ ମିଶିଗଲା ଆହା
　　ବିଶ୍ୱ ସୁଖ ଦୁଃଖ ରାଶି ।
ସମ୍ପଦେ ବିପଦେ ସ୍ୱଦେଶେ ବିଦେଶେ,
　　ଅତୀତ ବରଷା ମାରେ,
ସ୍ୱଜନେ, ବାନ୍ଧବ ମେଳେ, ଘରେ ବନେ,
　　ଅନୁନେ ତନ୍ଦ୍ରିମା ଝରେ,

ସୋଦର ସୋହାଗ ସ୍ମୃତି ଚ ସତତ
ଖେଳଇ ପରାଣ ଏବେ;
ସୋଦର ବିଚ୍ଛେଦେ ପ୍ରତି ଜୀବନଟି
ଗଢ଼ା କି ହୋଇଛି ଭବେ ? ;

## ଭାବୁକ

[ କବି ସତ୍ୟବାଦୀ ବିଦ୍ୟାଳୟର କୌଣସି ନିତାନ୍ତ ଅନ୍ତରଂଗ ସହକର୍ମୀଙ୍କୁ ଲକ୍ଷ୍ୟ କରି ଏ ପଦ୍ୟ ଲେଖିଥିଲେ ବୋଲି ମନେ ହୁଏ । ସତ୍ୟବାଦୀ ବକୁଳ ବନର କେତେକ ଗଛ କାଟିପକାଇବା ବିଷୟରେ ସେ ସମୟରେ ଶିକ୍ଷକମାନଙ୍କ ମଧ୍ୟରେ ଅଳ୍ପାଧିକ ମତଭେଦ ଘଟିଥିଲା ।]

କକ୍ଷ ମଧ୍ୟେ ବସି ଏକା ଯାମିନୀ ଦିବସ,
କି ଭାବ, ହେ ଭାବୁକ, ନିରତେ ?
ମନ ଜ୍ଞାନ ବଳେ ତୁଚ୍ଛ ମଣୁଛ ସକଳ,
ନିଜ ହିତେ ଦଳୁଛ ଜଗତେ ।

ଅଳପ କଥାକୁ ମନେ ଘେନ ବଡ଼ କରି,
ବଡ଼କୁ ହେ କରୁଛ ଅଳପ;
ଗୁପତ ଧିଆନେ କିବା ଅବୋଧ ଆଶୟେ
କି ମନ୍ତ୍ରର କର ସଦା ଜପ !

ବାଳୁତ ବୟସୁଁ ମୁହିଁ ପଦୁର ଯୁଗଳେ
ଢାଳିପରି ଦେଇଛି ଜୀବନ;
କେତେ ଦିବା, କେତେ ନିଶି ସୁଖ ଦୁଃଖେ ମୋର
ତୁମ ସଙ୍ଗେ ଶୟନ ସପନ ।

ଯାଅଁ୍ଚାହ୍ନ ଶରଦ ଶଶୀ ଗଗନ ଶିଖର୍
ଚଳ ଧୀରେ ଗଲେ ଅବତରି,
ଚଗଣ କଳ୍ପନା ଯେତେ ଉଚ୍ଚ ବ୍ୟୋମ ତଳେ,
ବେନି ଜନେ ଆସେଁ ଘରେ ଫେରି ।

ଯୋଗୀ ଶୋଷୀ ତାପୀ ଜନ ଯେତେ ଯେଉଁ ଠାବେ,
ତହିଁ ଯେବେ ଯାଅ ଅବହେଳେ,
ଏ ମନ ଚରଣେ ମୁହିଁ ଯାଇଅଛି ସଦା
ଅନୁସରି ସରସ ଅନ୍ତରେ ।

ତୁମ ମନେ ସୁଖେ ଦୁଃଖେ ମିଶା ମୁଁ, ସମୀରେ
ଧୂଳି ରେଣୁ ମିଶିଲି ପରାଏ;
ତେବେ କହ, ଭାବୁକ ହେ, ତବ ଦରଶନେ
ଏ ଚପଳ କମ୍ପି ଉଠେ କାହିଁ ?

କମ୍ପଇ ସହସ୍ର ଶିଶୁ ତରୁଣ ହୃଦୟ,
କମ୍ପ୍ର ଛନ୍ଦ ସଖା ସହଚର,
ତମାଳ ଥରନ୍ତି ବନେ, କୁଂଜେ କୁଂଜେ ଲତା;
ଜଗତେ କେହି ନୁହଇ ନିଡ଼ର ।

କି ଶ୍ୟାମ ସମ୍ପଦ ହୃଦେ ରଖିଛ ଗୋପନେ,
ଢାଳେ ତାହା ଦଶଦିଗେ ଢାଳି,
ହୃଦେ ହୃଦ ଢାଳି ମୁଁ ହେ ବସନ୍ତ ଚାତୁରୀ,
ସୁଧା ଧାରେ ନୟନ ଉଜାଳି ।

ଭାବନା ମନ୍ଦିରୁ ତବ ଯୁଗଳ ହୃଦୟେ
ଉଡ଼ିଯାଇ ଉଦାସ ଅୟନେ,
ଏ ବିଶ୍ୱ ଅନନ୍ତ ମଧ୍ୟ ହିତାର୍ଥ ନିମିତ୍ତେ,
ସ୍ନେହନିଧି ଭରନ୍ତେ ଚରଣେ ।

ଜନ ନେବେ, ପରହିତେ ଢାଳିଛ ଜୀବନ;
ପରେ ନିଜ ଲୁହଅ ମିଳାଇ;
ତେବେ ଯିନା ଗଢ଼ି ହେବ ଏ ଶିଶୁ ନିକେତ
ତୁମ ଢଂଗ ଆଦର୍ଶ ଅନାଇ ।

## ଭୁଲୁଥାଅ

"କହିଁ ଏତେ କାନ୍ଦୁ, ନାଗୀ, ହୁଅ ଗୋ ତୁ ତୁନି;
ଏ କରୁଣ ସ୍ୱରେ ଆଉ ନ କାନ୍ଦ ବାହୁନି ।
କି ଦୁଃଖ ହୋଇଛି ତୋର, ହଜିଛି କି ଧନ,
କରୁ ଯାହା ଲାଗି ଏତେ ସନ୍ତାପିତ ମନ ?
ଯିବାର ସେ ଯାହା ତୋର ଚାଲିଣି ତ ଚାଲି;
ବୃଥା କହିଁ, ନାଗୀ, ଆଜ ହେଉ ଏତେ ଭାଳ ?
ଏ ଚନ୍ତା କି ତୋ ପ୍ରାଣର, ଏତେ ଆକୁଳତା,
ଆଉ କି ମେ ବୁଝିଥିବ ତୋ ହୃଦୟ ବ୍ୟଥା ?
ପାଣେ ଥିଲା ଯାକ ଯେତେ ଥାଆନ୍ତୁ ନଜର,
ମନୁ ସେ ସ୍ୱପ୍ନ ପୋଛି ଦିଅଲୁ ଅନ୍ତର ।
ତୁ ପୋଛ ନୟନୁ ତେବେ ତପ୍ତ ବାରି ଧାର;
ବୃଥା ଏତେ କାନ୍ଦ, ବୃଥା ଏତେ ଦୁଃଖ ଭାର ।"

"ନା ନା, ବନ୍ଧୁ, ନ କହ ନିଦାରୁଣ ଭାଷା,
ପ୍ରୀତି ଦାନେ ଥିଲା ପ୍ରାଏ ପ୍ରତିଦାନ ଆଶା ।
ପ୍ରୀତି ରାଜ୍ୟ କେଉଁ କଏ ପ୍ରୀତିଦାନ ଭାବ ?
ପ୍ରୀତି ଲାଗି ପ୍ରୀତି ମିନା ପ୍ରେମିକ ସ୍ୱଭାବ ।
ଭାବୁଥିବ ମୁହିଁ ନାଶ୍ୱ ନରେଇ ନିରାଶେ,
ଯେତେ ଦିନ ପ୍ରିୟ ମୋର ନ ଫେରିଛି ପାଶେ ।
ଦିବା ନିଶି ଡ଼ାଳୁଥିବ ନୟନ୍ ଜାହ୍ନବୀ,
ବହ୍ନି ହୃଦେ ବରଦର ଉରଜାତ ଚବି ।
ଏତେକେ ସେ ଲକେ ଯେବେ ନ କନେ କରୁଣା,
ସାର ହେଉ ଏ ହିକ ମୋ ପ୍ରାଣର କାନ୍ଦଣା ।
ତା ସ୍ମୃତି ଉନ୍ମେଲେ ଏଂତେ ମୋ ସେନେହ ଝରେ,
ସେହ୍ନ ମୋର, ମୁହିଁ ତାର ପ୍ରୀତିର ବନ୍ଧରେ ।
ପ୍ରାଣେ ପ୍ରାଣ ନ ମିଶିଲେ, ନ ମିଶୁ ନକର;
ସୃଜିବ ପ୍ଲାବନ ମିଳ ବେନି ଲୁହ ଧାର ।
ବନ୍ଧୁ ନେଇ ବାରି ସଂଗେ ହେବାକୁ ସମାନ,
କି ଅଛି ଜଗତ ଶ୍ରେଷ୍ଠ ଧନ ରତ୍ନମାନ ?

## ପ୍ରତ୍ୟାଖ୍ୟାନ

ଏକାଠି କଇଁ ମୁଁ ଫୁଟି ସରୋବରେ,
ଯାପିଲି ଯାମିନୀ ସାରା;
ଉଷା ରବି କରେ ମୁଦିଲି ନୟନ,
ବସୋର ଜୀବନ ଧାରା ।

ତପନ ଅନଳେ ଯାଉଥିଲି ଜଳି,
ମରଣ ସୋହାଗ ତେଜ,
ବାସନା କୃଣାନେ ସଜାଡ଼ି ଉଦାସେ
ଚାଖୁଡ଼ା କେଶରେ ରଜ !

ଫୁଟିଲି ମୂଳକେ କମଳ କଳିକା,
ଟଳିଲି ସରସୀ ନୀରେ,
ସମୀର ହିଲ୍ଲୋଳେ ଖେଳିଲି ସରାଗେ;
ଦେଖିଲେ ସୁମନେ ଝରେ ।

ମୁହିଁ ସେତେବେଳେ ଲୋଡ଼ି ତ ନ ଥିଲି,
ଉଠିବ ମୋ ନିଦ୍ରା ଭାଙ୍ଗି;
ଯାଚି ତ ନ ଥିଲି ମୋରେ କେ ଚାହିଁଛି,
ମୁହିଁ ଅବା କାହା ଲାଗି ।

ତୁମେ କହିଁ ଏବେ ଉଠାଇଲ, ବନ୍ଧୁ,
ଦୂର ଅନ୍ତରୀକ୍ଷ ତାରା ?
ମରଣେ ଢାଳିଲ ପ୍ରୀତି ପ୍ରଦାନେ
ଅମର ପୀୟୂଷ ଧାରା ?

ବିଜନେ ଥିଲି ମୁଁ ବିପିନ ନିବାସୀ,
କଲ ବିଜନତା ଦୂର;
ସହସ୍ର ଯୋଜନେ ରହି, କଲ ଏଥି
ହୃଦ କରି ହୃଦ ଜୁର ।

ମରତେ ଜନମ, ମରତେ ବାସ ମୋ,
ମୋ ସ୍ୱର୍ଗ ମରତ ଶିକ୍ଷା;
ଜୀବନ ମରତ ସୁଖେ ସିନା ଚାରେ
ଏ ମରତ ଦେହ୍ଲା ତାଳ ।

ସମୀର ଚରଣେ ଖେଳିବ, ସଳିଳେ
ଦେଖିବ ବଦନ ଠାଣି,
ଫୁର ଫୁଲ ଭୁଲେ ଠରାଠରି ନେବ
ହୃଦୟ ଗୁପତ ବାଣୀ ।

ଏହା ସିନା, ପ୍ରୀତି ପରଶ ମଣି ହେ,
ଲୋଡ଼ଇ କରିଁଛି ପ୍ରାଣେ;
ନିମିଷକ ଦୂରେ ରହି କି ପାରିବ
ସୁର ସ୍ନେହ ସଜନମାନେ ?

ଏହି ସଉଭାଗ୍ୟ ପରାଣେ ଯେବେ ମୋ
ହେଲା ନାହିଁ ଲଭିବାର,
କି ସୁଖ, ପ୍ରିୟ ହେ, ନିମିଷେ ଜଗତେ
ବନ୍ଧି ଏ ଜୀବନ ଧାର ?

ପଚାରୀ ଗଗନ ଦର୍ଶିଲଣି ତୋରା,
ଅରୁଣ କନକ ତାଳି;
ମୁଁ ଏବେ ଭୁଲିତେ ମୁଦିବି ନୟନ,
ଆତପେ ଏ ତନୁ ଜାଳି ।

ନାହିଁ, କଣାମଣି, ଉଠାଇବ ଆଉ
ଏ ଘର୍ଦ୍ଧ ଦିବସ ପାରେ;
ଦୂର ବ୍ୟୋମବାସି, ବ୍ୟୋମ ବାଟେ ରହ,
ମୁଁ ବୁଡ଼େ ସରସୀ ନୀରେ ।

## ଶ୍ରୀପଞ୍ଚମୀ

ଆନ ପଥେ ଅଗମନ,
ସେ ଦିନ ମୁଁ ଗଲ୍ରନ୍ଧୁକା,
ଯେବେ ମୋର ଅନନ୍ତ ମେଲଣି;
ବରଷେ ହେଲାଣି ।
ଆଜ ପୁଣି ଉଭା, ମା ଗୋ, ଶ୍ରୀଚରଣ ତଳେ,
ଲୋଡ଼େ ଆଶ୍ରା ଜୀବନେ କାତରେ ।

ଭ୍ରମି ବହୁ ଦୂର ପଥେ ଶ୍ରାନ୍ତ ଅବସନ୍ନ
ହୋଇଛୁ ମୁଁ ଅତି;
ଏ ବିଷମ ନିରଶାରେ ଆଶ୍ରା ଯେ ଲଭିବ,
ନ ହୁଏ ପ୍ରତୀତି ।
କିପାଇଁ ଆବର ଫେର ଆସିଲା ଏ ଠାବେ ?
ଯାଏ ଏଥୁ, ଯାଏ ଭୂରି ଦୂରକୁ;
ଏ ବିଶ୍ୱ ଅନନ୍ତେ ଭ୍ରମି ବୁଲିବା ମୋ ଭାଗ୍ୟ;
ଦିଅ, ମାଗୋ, ଦିଅ ମୋତେ ଛୁଡ଼ି ।

ଅନନ୍ତ ଅନନ୍ତେ ମୁହିଁ ବୁଲୁଥିବ ନିତ,
ସୁଦୂର ସୁଦୂରରେ;
ଶୂନ୍ୟ ଚରେ ଶୂନ୍ୟେ ଯାଇ ହେବ ଉଚ୍ଚ କ୍ଷଣେ,
ତହୁଁ ପୁଣି ଫେରିବ ବଳକେ;

ଶ୍ୟାମଳ କାନନେ ଯେବେ ପ୍ରବେଶିବ ଯାଇ,
ନମିଷେ ସେ ଚାଲିଟିବ ମରୁ;
ଅସୀମ ଅର୍ଣ୍ଣବ ଜଳରେ ପଡ଼ଇଲେ ମୁହିଁ,
ଶୁଖିଯିବ ଅତଳ ଅତଳୁ;
ଫୁଲଟି ମୁଁ ଚରଣିଲେ ଚଢ଼ିବ ମଉଳ;
ପଲ୍ଲବିତ ତରୁ ଅଙ୍ଗ ଅନାଇ ମୁଁ ଦେଲେ,
ଯିବ ହେଲେ ଜଳି;
ମୋ କାନେ ପଡ଼ିଲେ ବନ୍ଧୁ ଗୀତିର ଅମୃତ,
ଶୁକ ପିକ ହୋଇଯିବେ ତୁନ;
ହସ ଖେଳ ଭେଳ ଧୀରେ
ମୋ ଆଗେ କାଢରେ
ଶିଶୁଗଣ କାନ୍ଦବେ ବାହୁନ ।

ଏହିପରେ ବୁଲୁଥିବ,
କାହିଁ ଆଶ୍ରା ନ ପାଇବ;
ଅନନ୍ତ ଅନନ୍ତେ ଯାଇ ସୁଦୂର ସୁଦୂରେ,
ଶୂନ୍ୟ ଶୂନ୍ୟେ ଭ୍ରମୁଥିବ ଏକା;
ହେକ ଶୋକ ନ ମେଣ୍ଟିବ, ନ ମିଳିବ ଶାନ୍ତି,
ଜୀବନର ଧ୍ରୁବ ତାରା ଦେବନାହିଁ ଦେଖା ।

ଶୂନ୍ୟ ଶୂନ୍ୟେ ଏହି ଭଳି
ଯୁଗ ଯୁଗେ ବୁଲି ବୁଲି,
ଦେଖିଲ ମୋ ଧ୍ରୁବ ଛାତ୍ର ଅନ୍ତେ ସେବତ ବେଳେ,
ତୁମ ଏ ଅଭୟ ପଦେ
ହୃଦ ପୂର୍ଣ୍ଣ ଗଦଗଦେ
ମିଶି ମିଳ ନନ୍ଦ, ମା ଗୋ, ପିତ୍ର ଅବଲମ୍ବନେ;
ଯାଏ ଏବେ ଫେରି ଏଥି ଜୀବନ ଆତୁରେ !
ରହ, ସରସ୍ୱତୀ ମନ୍ତ୍ର ଦିବ୍ୟ ପୂଜା ଥାଳ,
ଶୁଣାଅ ଅମର ଗୀତ ବଚଙ୍ଗୀ ବଜାଇ ।
ଭକ୍ତ ଜନେ ପରସନ୍ନ ହୁଅ, ବୀଣାପାଣି,
ଶ୍ରୀପଞ୍ଚମୀ ଆଶୀର୍ବାଦ ସ୍ୱର୍ଗୁଁ ଦିଅ ଆଣି ।

## ନ ହେଲା

ଅସୀମ ସାଗର ଆସି ତରଙ୍ଗ କୁହୁକେ
ଖେଳୁଥିବ କେତେ ପରି ଖାର ଭୂମି ବୁକେ ।
କେତେ ଟେଣ୍ଟ ଢେଉ ମଥା ନିମିଷେ ଦୋଳାଇ,
ନିମିଷକେ ଦେଉଥିବେ ଆବର ଲୁଚାଇ ।
କଣ୍ଠୁ କ୍ଷଣେ ଆଦା ମଳ ଜଳଧି ସଳିଳ
ରଜତ ଭୂଷଣେ ଦିଶୁଥିବ ଢଳଢଳ ।
ଝର ମଇକତ ତୁଟେ ପ୍ରୀତି ଆଲାପନେ
କେତେ କହୁଥିବ କଥା ତଟେ ଲପନେ ।

ଆପଣା ହୃଦଟି କୋଳେ ସରାଗେ ଖେଳାଇ,
ଗଗନ ଚନ୍ଦ୍ରମା ମୁଖେ ରହିଥିବ ଚାହିଁ ।
ନୀରବ ସମ୍ପଦ ଥିବ ଧରା ବ୍ୟୋମ ପୂରି,
କୋଟି ବିଶ୍ୱ ବ୍ୟାପିବାକୁ ସଘନେ ଉଚ୍ଛୁଳି ।
ଝର ନୀର ବେଣୀଙ୍କର ଗୁପତ ବାର୍ତ୍ତା,
ଏକ ଆନ କାନେ ଛପି କହୁଥିବା କଥା
କାନ ଡେଇଁ ତଳେ ଯାଉ ନ ଥିବ ତ ଦୂରେ;
ବହାଇ ନୀରବ ନଦୀ ମହୋଦଧି କୂଳେ ।

ସଞ୍ଜେ ଆସି ଯେତେ ଯହିଁ ଯୁବା ଯଉବନ୍ନ
ସିନ୍ଧୁ ତୀରେ ଭାଳୁଥିଲେ ନର କଣ୍ଠବାଣୀ:
ସିକତା ଆସନେ ବସି ଅପୂର୍ଣ୍ଣ ଶଯ୍ୟାନେ,
ଘେନୁଥିଲେ ଜଳ ବେଣୁ ସମ୍ପଦ ଦୋଳେ;
ଶୀକର ଅମଳ ଖେଳ ବାଳି ସ୍ତୂପ ଦେହେ
କ୍ଷୀଣ ସନେ ବନ୍ଧୁ ଥିଲା ପ୍ରେମିକ ସ୍ନେହେ ।
ସେହିମାନ ଏବେ ଆହା ପଡ଼ିଥିବ ଶୂନ୍ୟ,
ଏକୁ ବଳ ହୋଇଥିବ ଆରେକ ମଣ୍ଡନ ।

ଯାଉଥାନ୍ତୁ,—ନିମିଷେ ମୁଁ ସେ ମୋହନ ମେଳେ
ଆପଣା ଏ ଚରଣଟି ନହିଥାନ୍ତି ହେଲେ ।
ବିଶ୍ୱର ଅନନ୍ତେ ଢାଳି ଏ କ୍ଷୀଣ ଜୀବନ,
ବୁଝିଥାନ୍ତି କି ମହତ ମର୍ତ୍ତ୍ୟେ ମୋ ଜନମ ।
ପରାଣରେ ପ୍ରିୟ ସିନ୍ଧୁ, ପ୍ରିୟ ସେହି ବେଳା,
ପ୍ରିୟ ମୋର ନୀରବତା;—ନ ହେଲା, ନ ହେଲା !

# କୋଇଲି

କହ ଏ ପୀୟୂଷ ଧାର ଢାଳୁ ତୁ, କୋଇଲି,
ଗଛ ଡାଳେ ଲୁଚିରହି;
ନଦୀ ଗିରି ବନ ସ୍ଥଳ ସରସୀ ପ୍ରାନ୍ତର
ଉତ୍ସୁକ ଉଠୁଛି ଚହିଁ !
ଫୁଲୁ ଫୁଲେ ପରଶି ସେ, ମଧୁ କଣିକାଏ,
ନିମିଷେ ଯାଉଛି ଖେଳି;
ପଲ୍ଲବ ଅଙ୍କୁର ଲତା ବିପିନ ସଂପଦ
ସୃଜୁଛି ନିସର୍ଗ କେଳି ।
ଏ ଧନ କେବଣେ ତୁ, ପିକ, ଅସୀମ ଭଣ୍ଡାର
ଲୁଚାଇ ରଖିଛୁ କାହିଁ ,
ନବୀନ ବସନ୍ତେ ନୃତ୍ୟ କୁସୁମ ବିକାଶେ
ଆସି ବିତରିବା ପାଇଁ ?
ଇନ୍ଦ୍ରଧନୁ ସୌଦାମିନୀ ପୂର୍ଣ୍ଣ ବିଧୁ କରେ
ସରଗ ମରତ ସାରା
ତୋ ସ୍ୱର ସଙ୍ଗତେ ସରି କରି କି ସମ୍ପଦ
ବାଣ୍ଟି ଦିଏନ ଦେବ ଧରା ?
କଣିକାଏ ସେଥୁ ଏବେ ଆସ୍ୱାଦି ପରାଣେ,
ସରସ ଏ ଜନ୍ମ ମୋର;
କବା ମୁଁ ନୁହନ୍ତି ପୁଣି, ସେ ଗୀତି ପୀୟୂଷ
ପିଉଥିଲେ ନିରନ୍ତର ?

# କବି-ଉପବନ

[ ବ୍ୟାସକବି ଫକୀରମୋହନଙ୍କ ମୃତ୍ୟୁ ପରେ ଏତେ ଦୀର୍ଘକାଳ ବହି ଯାଇଥିଲେ ସୁଦ୍ଧା, ମଲ୍ଲିକାଶପୁର ବଗିଚାର ଅବଶେଷ ଆହୁରି ରହିଛି । ଗୋଟା କେତେ ଖୁଣ୍ଟା ଗଛ ଅଦ୍ୟାପି ମୁଣ୍ଡ ଟେକି ଠିଆ ହୋଇଛନ୍ତି ଓ ଦିନେ ଯେ ସ୍ନେହ ଆଦର ପାଇଥିଲେ, ତାହା ଜଣାଉଛନ୍ତି । ]

"କବି, କାହାପାଇଁ କଲ ଏ କୁସୁମ ବନ,
ନିତି ନିତି ଯହିଁ ଏତେ ସାଧନା ଧିଆନ ?
ମଲା ମଲା ଭରି କେତେ ଢାଳୁଅଛ ପାଣି,
ଯତନେ ଦେଉଛ ବାଡ଼ି ଚଉପାଶେ ଆଣି ।
ନୁଇଁ ତଳୁ ଘାସ ଲଟା ଉପାଡ଼ି ସବୁରେ,
ରଖିଛ ବଗିଚାଟିକି ନନ୍ଦନ ସୋହାଗେ ।
ତରୁଲତା ବାଛି କେତେ ଆଣିଛ ଯତନେ,
କାହା ପାଇଁ ନିତି ରୋପି ରଖୁଛ କାନନେ ?
ପୁଅ ପତ୍ନୀ ବଳି ଏକୁ କରିଛ ଅଧିକ,
ଦିବା ନିଶି ବସି ଏଥି ଲଭ ଏତେ ସୁଖ ।

"କହ, କାହା ପାଇଁ, କବି, ଏତେ ତବ ଶ୍ରମ,
ଏ ବନେ ଜୀବନେ ଢାଳିଦିଅ କି କାରଣ ?
ରୋପ ଯେ ଲତାଟି ଆଣି ଯତନେ ସଜାଡ଼ି;
ଦୁଇ ଦିନେ ସେ ତ ପୁଣି ପଡ଼ଇ ଝାଉଁଳି ।
ଫୁଲଟି ତରଣ ଯେନ ଫୁଟେ ସତ ଡ଼ାଳେ;
ଏତେ ତବ ସୁଆଗ ସେ ବୁଝେ କି ଅନ୍ତରେ ?

ନମେଡ ମାତର ଫୁଟି ନୀରବ ଗୀତା ତଳି,
ଆନ ନଦିକୁ ପୁଣି ଚଳିଗ ମଉଳି ।
ଜୀବନେ ତା ସମ୍ପଦେ ସେ ନ ମୋହ୍ନ ଅନ୍ତର,
ମରଣେ କେବଳ ଦୁଃଖ ଭଅର ନକର ।

"ଏତେ ପ୍ରୀତି ଯଦ୍ଧ ପୁଣି ଉଟବନ ଫୁଲେ,
କ ବାଧୁ ନ ଥିବ ପ୍ରାଣେ ମଳି ପଡ଼ିଲେ ।
ଗୋପିଲି ଲତାଟି ଯେବେ ହୋଇଥାନ୍ତା ଚର,
ଦେଖନ୍ଥାନ୍ତା ତଳେ ହୃଦ ବେଦନା ବକଳ;
ଫୁଲଟି ଫୁଟି ନେହ ଯେବେ ଚନ ଶ୍ୟାମ ଶାଖେ,
ନିତ ନାଚୁଥାନ୍ତା ଡାଳ ହୃଦ ପ୍ରୀତି ଡାକେ;
ଏତେ ଶ୍ରମୁ ବୃନ୍ତ ବା ସଫଳ କଣ୍ଟେ,
କଣିକାଏ ହେଲେ ପ୍ରୀତି ଥାବର ମରତେ ।

"ସ୍ନେହମୟ ମାୟା ଛାୟା ଜାଲେ କ ବିଭ୍ରମେ ଭୁଲି,
ଜୀବନ ମାଣିକ୍ୟଟିକ ଦେଇଅଛ ଢାଳି ।
କାହାଲାଗି, କହ, କହ ଏ କୁସୁମ ବନ,
ନିତ ନିତ ଯତ୍ନେ ଏତେ ସାଧନା ଧ୍ୟାନ ?
ଏଥୁ ଅଧେ ସାଧନାରେ ପାରନ୍ତ ବଖାଣି
ହୃଦୟେ ରଖିବ ନେତ ପ୍ରୀତି ଚାଟୁବାଣୀ ।
କେତେ 'ମାମୁ' 'ଲକ୍ଷ୍ମୀ' ନେ ପାରନ୍ତ ବରଚ,
କେତେ ଚତ୍ୟ ଗୀତ ଗ୍ରନ୍ଥ ରଚିଯାନ୍ତ ସଞ୍ଚ ।

ଯା ବଚନ ବୋଲନ୍ତ ବାଣୀ ତନୟ ଭରତେ,
ବଂଶ ଶତାବ୍ଦୀର ଉଦ୍ଭୂତ ଏ ଜଗତେ ।"
ବଗିଚାରେ ସହକାରେ ମାଳତୀ ଲତିକା
କମୋଦନ ଚନ୍ଦନ ଗୁନ୍ଥି ରଖିଛୁ ମାଳିକା ।
ତହିଁ ତଳେ ଛନ୍ଦ କବ ମଣ୍ଡନେ ନବସି,
ଗୋଟି ଗୋଟି ତାଙ୍କୁ ଫୁଲ ପଡ଼ୁଅଛି ଖସି ।
ଚପଳ ତରଙ୍ଗ ଖେଳି, କାନନ ସମୀର
ଝରଣୀ ଟନ୍ତୁ ଲତୋ ଅଙ୍ଗ ବନ୍ଦୁଅଛି ଧୀର ।
ଡାଳେ ଡାଳେ ତରୁମେଳେ ବସନ୍ତ, କୋଇଲି
ପୀୟୂଷ ପଞ୍ଚମ ଧାରେ ଢାଳଇ କାକଳି ।
ଗୁଣୁ ଗୁଣୁ ଗୁଣି ଅଳି ମଧୁର ଗୁଞ୍ଜନେ
ମୃଦୁ ସ୍ରୋତେ ଉଠିଯାଏ ସୁମନୁ ସୁମନେ ।
ବଳଙ୍ଗ ସଳିଳ ଲୀଳା ଚମଳ ବନ୍ଧାରେ
ମିଳିଯାଏ ଉପବନ ପତ୍ର ଫୁଲ ଫଳେ ।

ଏ ସବୁ ଭିତରେ ରହି, ପୁଲକିତ ମନ
ଭଜନ ଆସନୁ କବ ଭଣିଲେ ବଚନ;—
"ଫୁଟି କନିଷ୍ଠେକ ଫୁଲ ଗଲେ ଖେଳ ଡାକେ,
ମୁଁ ତ ମଣେ ଯୁକେର ନଥି ସେ ସଂସାରେ ।
ଦୂର ରବ କରଙ୍କର କ୍ଷୀଣ ପ୍ରତିଫଳ
ଶଶୀ ସୁଧା ବଦନେ କ ପ୍ରୀତି ସୁମଧୁର ।
ଜଳଦ ଉଷ୍ଣୀତେ ଗିରି ନମେନ୍ତ ମାଧୁରୀ
ଉଲଙ୍ଗ ପାହାଡ଼ ଶୋଭା ଶତ ଗୁଣ ବଳି ।

ବସି ଏଥି ଉପବନେ ମାଟି ମୂର୍ତ୍ତିସମ,
ସାରା ଜଗତର ଶିକ୍ଷା କରେ ମୁଁ ଗ୍ରହଣ ।
ଯେତକ ମୁଁ ପ୍ରାଣେ ତହୁଁ ପାଉଛି ସମ୍ବାଦ,
ସେତକରେ ବଢ଼ୁଛି ଜୀବନର ଆଧି
ସେ ଆଧି ସଂଯୋଗେ ମୋର ଫିଟିଅଛି ନେତ୍ର,
ଏ କ୍ଷୁଦ୍ର ଜୀବନେ ଦେଖେଁ ମୁଁ ବିଶାଳ କ୍ଷେତ୍ର ।
ସେ କ୍ଷେତ୍ରେ ନାହିଁ ମୋ ଲବେ ବଡ଼ ସାନ ଭେଦ,
ନାହିଁ ମଧ୍ୟ ତକ୍ତ କଷ୍ଟ, ନାହିଁ ହର୍ଷ ଖେଦ ।
ଏତିକ ସଂସାରେ ଯେବେ ଚାହିଁ ପାରେ ନର,
ଏତହୁଁ ଅଧିକ କିବା ଖୋଜିବ ଆଉର ?"

## ଜାଗର ଜଣୀଥେ

[ ଏ ପଦ୍ୟଟି ଚନ୍ଦ୍ରଧରପୁରରେ ଲେଖା । ଚନ୍ଦ୍ରଧରପୁର ବିଦ୍ୟାଳୟର ସହକର୍ମୀଗଣ ପ୍ରାୟ ସମସ୍ତେ ଅତ୍ୟନ୍ତ ସେବାପରାୟଣ ଥିଲେ । ବାଲୁକେଶ୍ୱର ମହାଦେବ ମନ୍ଦିର ବାଣପୁରରେ, କବିଙ୍କ ଘର ନିକଟରେ । ସତ୍ୟବାଦୀ ବିଦ୍ୟାଳୟର ଛାତ୍ରାବାସରେ ଶିବରାତ୍ରି ଦିନ ରାତିରେ ଗଛତଳେ ଜାଗର ଜଳାଯାଏ । ସେଥିରେ ଆଂଶିକ ଭକ୍ତି, ଆଂଶିକ ପ୍ରତିଯୋଗିତା ଓ ଆଂଶିକ ଆମୋଦ ଥାଏ । ଚନ୍ଦ୍ରଧରପୁରରେ କବିଙ୍କୁ ଅଧିକ କର୍ମଜଂଜାଳ ମଧ୍ୟରେ ରହିବାକୁ ହେଉଥିଲା । ସେଥିପାଇଁ ରାତିରେ ଦିନେ ଦିନେ ତାଙ୍କ ନିଦ୍ରାରେ ବ୍ୟାଘାତ ଘଟୁଥିଲା । ]

ଦୁଇ ପ୍ରହର ତ ହେଲାଣି ଯାମିନୀ,
ଶୁଭେ ନିଶା ଗରଜନ;
ସାଙ୍ଗ ସାଥି ତଳିପାଣେ ଏ ସକଳ
ସୁଖ ନିଦ୍ରା ନିମଗନ ।

ଜାଗ୍ରତ ଯେ ବୁଦ୍ଧି ହୃଦୟ ବାସନା
ଝଙ୍କନ୍ତୁ ସୋଦର ଫଣେ;
କେତେ ଦିନେ ଏବେ ପଡ଼ିଛନ୍ତି ଶୋଇ,
ମୋ କଥା ନ ବଳ ମନେ ।
ମୁଁ ଆହା ସେଦିନ ସପନେ ପାରନ୍ତି
ମୁଦି ଏ ନୟନ ଡୋଳା;
କିମିତ୍ତ କିମିତେ କ ଅ.ସେ ଶ୍ଚଳେଣି,
ବଡ଼ାଇ ଅନ୍ତର ଜ୍ୱାଳା ?
ଚଉଠୀ ଗଗନ ସାନ୍ଧ୍ୟ ତାରି ମୁଣ୍ଡ-
ଉପରେ ଗଲାଣି ଗଡ଼;
ଯେତେଲେଣି ବାସେ ନଗର ପ୍ରହରୀ;
ଅର୍ଦ୍ଧ ନିଶି କୃତ୍ୟ ସାରି ।
ଶୋଇବ ଭୂତଳ ଧୂଳିକା ତଳରେ
ସନ୍ତାନ ସେନେହ ମେଳେ;
ମୁଁ ଆହା ଏ ଭଳି ଗଡ଼ୁଥିବ ଶେଯେ
ନିଶି ଜାଗରଣ ଜାଳେ !
ଜାଳଥିଲେ ବସି ଜାଗର ଦେଉଳେ
ସୋଦର ବାନ୍ଧବ ଭାଇ,
ଶିବରାତି ବ୍ରତ ଫଳ ଅବା ମଂତେ
ଦିନେ ପାଉଥାନ୍ତି ପାଇ ।
କେତେ ଠାବେ କେତେ ଶିବ ପୂତ ପୀଠେ
ଅବର ଯୁବକ ଜନେ,
ଉଚ୍ଚ ମୁନ୍ଦେ ପଟେ ଡଇଲ, ଥିବେ ଟି
ବସି ନିଶି ଜାଗରଣେ ।

ନେହଲେ, ମନେ ଅଛୁ, ସେ ବାଲୁଂକେଟ୍ରର
ଦେଉଳ ବାଲୁତେ ଥରେ
ସଂଜ୍ଞ ଗାନ୍ଧ ପାଇଗଲୁ କ ପୁଲକେ,
ଜାଗର ଜାଳ ମୋ ଭଲେ ।
ମୃଦୁଲେ ଯାମିନୀ ଶେଷ ଯାମ· ନଦ୍ରେ
ମୁଦନ୍ତେ ମୋ ନେତ୍ର ବେନ,
ଜାଳ ମୁଁ ମଠନ କୋଳେ ନମିଷେ, କ
ଶୁଣିଲା ନସର୍ଗ ବାଣୀ ।
ଆମି ପାଣ୍ଡଶ ଶିବ କହଲେ, "ବାବୁ ରେ,
ଜାଗର ଜାଳୁ ତୁ ବସି;
ଦେଖି ତୋ ଭକତି, ମନ ଭାପନାଚି
ମୂଲ୍ୟଇ ଶିବ ମୁଁ ହସି ।"
ନଦ ଭାଙ୍ଗି ଗଲା, ଦେଖିଲି ଗରଭେ
ମନ୍ଦିର ଜଳୁଅଛୁ ଦୀପ;
ତେଜ ତରତରେ, ସପନ ଚରିତ
ବସି ଚନ୍ତେ କଲି ଜପ ।
ସେହିଦନୁ କେତେ ଗଲଣି ଜାଗର;
ଆଉ ତ ଶୁଣିଲା ନାହିଁ
ସେ ମରଗ ବାଣୀ; ସେ ଛାୟା ମୂରତ
ନୟନେ ଦେଖିଲି କାହିଁ ?
ନତେବ, ଆଉ ଦନେ, କମ ନକେତନେ
ବାଲୁତ ମେଳାପେ ବସି,
ବକୁଳ ତମାଳ ନକୁଞ୍ଜ ଜାଗର
ଜାଳି, ପୁହାଇଛୁ ନଶି ।

ହଠ ହଠ ଅଙ୍ଗେ ଚଢ଼ି ଢାଙ୍କୁ ଧୀରେ
ତୁଷାର ଶୀତଳ ବାତ,
ଅଳସେ ନୟନ ମୁଦି ହୋଇଲେ
ନିଦ୍ରା ପରଶନେ ଭାତ ।
ଡାକ କେ କହିଲା ଧୀରେ, ଉଠ ବେଗେ,
ପାହି ତ ଗଲାଣି ରାତି”;
ଉଠି, ପ୍ରାଚୀ ନଭେ ଦେଖିଲି ମଧୁରେ
ଅରୁଣ କନକ କାନ୍ତି ।
ତ୍ୱରେ ଜାଗରେ ମୋ ଗଲାଣି ସେ ଦିନୁ
ଶତ ଏ ଜୀବନେ ଠିକେ;
ଦେଖିଲି, ନାହିଁ କେହି ଉଠାଇଲା ଯିଏ
ସେ ସ୍ନେହ ସଙ୍କୋଚ ଡାକେ ।
ଶୋଇ ପଡ଼ନ୍ତେ, ମୁହିଁ ବୁଝିଲି କେବଳ
ସ୍ୱପ୍ନ ବିମୋହନ କୋଳେ;
ଅବଶ ଗଗନ ବକ୍ଷ ଆଲୋଡ଼ନେ
ଉଠି ନ ରହିଲି ଡୋଳେ ।
ଦେବ ଆବାହନ ନ ଜାଣିଲି ଯେବେ,
ଜାଣିଲି ନାହିଁ ଜାଗର;
ଜୀବନ ସେବା, ଗୁଡ଼ ହାତୁ ଥରେ,
ପାଇଲି ନାହିଁ ଟି ମୋର ।

ଆଜ ତେବେ କାହିଁ ଲୋଡ଼େ ମୋ ନୟନେ
ନିଦ ନାହିଁ ଆସେ ଢିଳେ ?

ଘଡ଼ିରୁ ଘଡ଼ିକ ହେଉଛି ଉଚ୍ଚୁର
ବୃଥା ନିଶି ଉଜାଗରେ ।
ଲିଭନ୍ତି ନିମା ଦୀପ, ମରିଛି ପତଙ୍ଗ,
ଜଳୁଛି ବଳିତା ଗୋଟି;
ରଜନୀ ତିମିର ଧରା ବ୍ୟୋମ ସାରା
ଗାଢେ ରହିଅଛି ଘୋଟି ।
ନିମିଳେଣି ନୟନ ବୁଜିହେଲେ ସିନା,
ଶୁଅନ୍ତି ସପନେ ଦ୍ରବ;
ଉଠନ୍ତି ଅଶାନ୍ତ ଶିଶୁ ସୁମରଣେ
ଲଭେବ ବା ହରଷ ଲଭ'

ଲଗି ଆସ, ନିଦ, ଲଗରେ ଭୁଲିତେ,
ରଜନୀ ଯାଉଛି ପାହି;
ସାଙ୍ଗ ସାଥି ଯେତେକ ଶୁଅନ୍ତି ପୁଲକେ,
ପଡ଼େ ମୁଁ ଚଲିକ ଶୋଇ ।
ନୋହିଲେ ଦିଶିବ ଶେଷେ ପଡ଼ ସିନା,
ଲୋଟିବି ଗଡ଼ିବ ଯେତେ;
ବସି ବସି ରାତ୍ର ପୁହାଇଦେବ ମୁଁ
ଅନିଦ୍ର ତଟେ ନେନେ ।
ଉଠିଲେ ଶୁଣିବ ପ୍ରଭାତ ଚହଳ,
କରମ ବନ୍ଧନ ଗାଥା,
ସାଧିବ ଯା ମର ଜୀବନେ, ଠେକ ମୋ
ଶ୍ରାନ୍ତ ବଲ୍ଲୀକତ ମଥା ।

ଦେଖିଲେ କାହିଁ ମୋର ଲାଗେ ରେ ଆଶା ରେ
ଅମିତ ମାଧବ ଧନ,
ଯା ଯୋଗେ ଅଗାଧ ସାଧନ ଜୀବନ
ହୋଇବ ସମ୍ଭବରେ ?
ମୁଁ ଜଣେ ସାମାନ୍ୟ ଦେହଧାରୀ ମର୍ତ୍ତ୍ୟ,
ଗଢ଼ା ସ୍ୱଳ୍ପ ଉପାଦାନେ;
କଠୋର ସାଧନେ ସିଦ୍ଧି ଲୁବ୍ଧ କାମ୍ୟ ତେ
ଲଭିପାରେ ନାହିଁ ପ୍ରାଣେ ।

## ନେତ୍ର ଦୁର୍ଲ୍ଲଭ ବାର

[ 'ଜଗା' ନାମରେ ଗୋଟିଏ ପ୍ରାୟ ବାର ବର୍ଷ ବୟସର ଗଉଡ଼ ପିଲା କବିଙ୍କ କାର୍ଯ୍ୟପର କରିବାକୁ ରହିଥିଲା । ତାକୁ ଆଠ ବର୍ଷ ବୟସରୁ ତା ବାପ ମା କବିଙ୍କ ଘରେ ଛାଡ଼ି ଦେଇଥିଲେ । ସତ୍ୟବାଦୀରୁ ସେ କବିଙ୍କ ସଙ୍ଗେ ଚକ୍ରଧରପୁର ଯାଇ, ସେଠାରେ ଗୃହିଣୀ ଓ ତାଙ୍କ ପୁଅ ଝିଅଙ୍କ କଥା ମନେ ପକାଇ କାନ୍ଦୁଥିଲା । ଗୋଟିଏ ପୁଅ ଓ ଦୁଇ ଗୋଟି ଝିଅଙ୍କୁ 'ତିନୋଟି କୁସୁମ କଳିକା' ରୂପେ ବର୍ଣ୍ଣନା କରାଯାଇଛି । ସେ ପିଲାମାନଙ୍କର ରୂପ ସୁନ୍ଦର ଥିଲା । ଚକ୍ରଧରପୁରରେ ପ୍ରବଳ ଗ୍ରୀଷ୍ମ ହୁଏ । କବି ଗ୍ରୀଷ୍ମ ଅବକାଶରେ ସତ୍ୟବାଦୀ ନ ଯାଇ ଚକ୍ରଧରପୁରରେ କାର୍ଯ୍ୟ ଉପଲକ୍ଷ୍ୟରେ ରହିବା ଯୋଗେ ଜଗାର ସତ୍ୟବାଦୀ କଥା ମନେ ପକାଇ କାନ୍ଦିବାର କାରଣ ଘଟିଥିଲା । ]

"ତାକୁଅଛୁ କାହା, ପିଲାଟି, ନେତ୍ର ଦୁର୍ଲ୍ଲଭ ବାର,
ଏ ତପ୍ତ ଭୂତଳ ଧୂଳିକା ସପ୍ତ ତନୁ ପଖାଳି ?

ତୁମ୍ଭ ହୁଅ ବେଗେ, ବାପ୍ପା ରେ, ହୃଷ୍ଟ ନ କାନ୍ଦ ଆଉ;
କି ଦୁଃଖ ମନେଲଣି ପଡ଼ିଲେ, ବୁଦ୍ଧି ମୋର କି ନାହିଁ ?
ବାପ ମାଆ ଦେଲେ ଛିଣ୍ଡାଇ ଧୂମ ସେନେହ ଡୋର,
ନ ଧଇଲେ କୋଳେ ନିମିଷେ ପ୍ରାଣ ରହନ୍ତ ବୋଲି ।
ଛଳ ବନ ବାଟ ପ୍ରାନ୍ତର, ଗ୍ରାମ ତଟିନୀ ସର,
ଯହିଁ ଯେତେ ଗାଳ ହୃଦୟ ହୋଇଥାନ୍ତୁ ଲୀନର—
ସବୁ, ବାପ୍ପା, ତେଜ ଆସିଲୁ, ବଧ୍ୟ ନଦେଶ ମାନି,
କାଟି ବଧ୍ୟ ଦନ୍ତ ବନ୍ଧନ, ମାଗି ନ୍ୟୁର ନେଲଣି ।
ଭାଳ ଆଉ କହାଁ ହେଉ ରେ ଭବେ କାହାର ପାଇଁ,
ଭାଳିବାର ଯେବେ ଭୂତଳେ କ୍ଷୀଣ ବନ୍ଧନ ନାହିଁ ?”

“ବୁଝିଲ କି, ବାବୁ ଭାଳୁଛି ଦୂର ସ୍ୱଦେଶ ମୋର
ବାପା ମାଆ ସ୍ନେହ ସ୍ମୃତି, ନଦୀ ବନ ଭୂଧର ?
ତେଜି ଯେବେ ଆସିଅଛି ମୁଁ ପିଣ୍ଡେ ପବନ ଥାଉ,
ଦେଇଛି ଜୀବନୁ ବହୋଟି; କଥା ଭାଳିବ ଆଉ ?
ଯାହା ମୁଁ ପାଳନେ ପାଇଛି ସେ ମୋ ସ୍ୱର୍ଗ ସଂଗୀତ—
ଅର୍ଦ୍ଧ କି ସପନ ସଂପଦ, ଅର୍ଦ୍ଧ ଜାଗ୍ରତ ଶିଶୁ ।
ମାଆ ତହୁଁ ବଳ ମାଆ ମୋ ସେ ପେ କୁଟୀର ବନୀ;
କି ସ୍ନେହେ ଅଜସ୍ର ନିତ୍ତୁର ମୋତେରେ ଅତୀତ୍ୟ ମଣି ।
ବୋଲଣା କଲେ ମୁଁ ବୋଲି ସେ ନାହିଁ ବାଅନ୍ତି ପଦେ,
ଭଲ କଥାଟିଏ କହିଲେ, ତୋଳି ନିଅନ୍ତି ହୃଦେ ।
ଭିନୋଟି କୁସୁମ କଳିକା ବୃନ୍ତେ ଅଛନ୍ତି ବନ୍ଧି,
ମୋରେ କି ଅପର ସୁମନେ ସେହି ସୋହାଗେ ନନ୍ଦି ?

କି କରୁଥିବେ ସେ ପିଲାଏ ନାହିଁ ଦେଖିଲା ଦିନେ;
ଏତେ ଦୂରେ ଆସି ରହିଲି, ଚେତ ନଥିଲ ମନେ।
କେବେହୁ ମୁହିଁ ଅଛି ଏଠାରେ, ଭାଳୁଥିବେ ନିକର;
କେବେ ବାହୁଡ଼ିବ, ପଚାରୁଥିବେ ଥରକୁ ଥର।
କେବେ ପୁଣି ମୋତେ ପାଆନ୍ତି, ଥରେ ଦେଖନ୍ତି ଯାଇ;
ଏ ଜୋତି ଲଭେ ମୁଁ ତ୍ରିଲୋକ ଯାଇପାରୁ ତ ନାହିଁ।
ଫୁଲ, ବାଛୁ, ପିବ ବାଳକ; ସେତ ହୃଦ ସଂଖାଳି,
କାହିଁର ମୁରୁଚ୍ଛି ରହିଛ ସବୁ ସୋହାଗ ଶିଶୁ ?"

"କି ତୁମେ ପଡ଼ିଛୁ ପିଲାରେ, ବୁଝୁନାହୁଁ ନିକର
ଏ ମାୟା ଜଡ଼ିତ ଜଗତ ପ୍ରୀତି ସେନେହ ଖେଳ।
ତୋ ଠାରୁଁ ଅଧିକ ଭଲେଣି କରୁଥିବେ ମୋ ପାଇଁ
ମୋ ପ୍ରାଣ ଦୋସର ପ୍ରତିମା; ମୁହିଁ କାନ୍ଦୁ ତ ନାହିଁ।
ଜୀବନେ ଜୀବନ ମିଶାଇ ମର ମର୍ମରେ ନାକ
ମୋ ପ୍ରୀତି ବେଦରେ ହୃଦୟ ଦେଇଅଛନ୍ତି ବଳି।
ଲୁଚି ବସି ଶୂନ୍ୟ କୁଟୀରେ, କେହି ନ ଥିବା ବେଳେ
କେତେ ଢାଳୁଥିବେ ନୟନୁ ନୀର ବିଷାଦଭରେ।
କୋଳର ଅମୂଲ୍ୟ ରତନ ଧୂଳି ଦୁହିତାଗଣ
ଦେଖି, ବହୁଥିବ ସେ ବାର ଧନୁ ଅଧିକ ଧନ।
ମୁହିଁ ଗଲେ, ପୁଣି କହିବେ ଦିନ ଦିନକ କଥା;
ଏତମାନ ଦରେ ମୋ ଆଗେ ବେଗେ କ ତୋଳା ନଥା।
ସେହି ପିଲାମାନେ ଦେଖିଲେ ଘର ଆସିବେ ଧାଇଁ,
ଦୋଚନ୍ଦା ଶଙ୍କିତ ସଂକୋଚ ମୋରେ କହିବା ପାଇଁ।

ଦରେଖି ବଚନେ ଭାଷିବେ ବୃଥା ବାରତା କେତେ—
ଗାଇ ଜନ୍ମ କଥିବାର, ମାଛ ମିଳବା ହାଟେ ।
କି ଅଶ୍ରୁ ମୋର ସେ ସମ୍ବାଦେ, ନାହିଁ ବୁଝିବେ ତେଳେ,
ଯେଉଁଦିନ ନାଦର ଉଦ୍ବେଳେ କମ୍ପିଯିବାର ବେଳେ ।
ଏତେ ସ୍ନେହ ମୋହ ପାଇଁ ରେ ଯେତୁ ଅନନ୍ତ ଗୋଷ୍ଠି,
ତା ପାଇଁ ତେଳେ କି ଭାଳେଣି କରୁଥିବେ ସେ ବସି ?
ନ କାନ୍ଦ, ଅଜ୍ଞାନ ପିଲଟି, ମିଥ୍ୟା ବିଭ୍ରମେ ଭୁଲି;
ଭୁଲି ନୁଅ, ନେତ୍ର ଅଞ୍ଚଳେ ପୋଛିଦେଉଛି ବାରି ।"

ଏତେ ବେଳେ ବନ୍ଧିଯିବାର ବେଳ ମୋ ନେତ୍ର ନୀର
ନିରେଖି, ହସିତେ ପିଲଟି ଧୀରେ ଭାଷିଲା ଗୀର;—
"ଏତେ ଏତେ ସ୍ନେହ ରେଖା ହୃଦ ନିଳୟେ ବନ୍ଧି,
ଏ ବିଚ୍ଛେଦ ଭାର ସମ୍ଭାଳି ଯେବେ ପାରନ୍ତ ରହି,
ମୁହିଁ କମା, ବାବୁ, ଢାଳିବ ନେତ୍ର ଜଳକ ବାରି ?
ବସି ତୁମ ପାଖେ ଥିବି ହେ, ହୃଦ ପଥର କରି ।
ମୋଲଗି କମ୍ପାଇ ଭାଙ୍ଗିବେ ଘର ଘରଣୀ ରାଣୀ;
ପିଲାମାନେ କହିଁ କାନ୍ଦିବେ, ଦେଇ ମୋତେ ମେଲାଣି ?
ଖାଲି ମୋତେ ନଷ୍ଟ ଲାଗୁଛି, ଭାଙ୍ଗୁଥିବେ ନିକର,
ନେତ୍ର ବାରି ଧାରେ ଭିଜାଇ ଶୂନ୍ୟ କୁଟୀର ତଳ ।
ଏତେ ଭାଳ, ଅଂଗୁ ମୋର ଯେ ଯାଏ ଚରଣ ଲୁଟି;
କେତେ ତାଙ୍କ ନେତ୍ର ନୀରେ ଏ ନେତ୍ର ପାଉଛି ଫୁଟି ।
କାହିଁ ମାଆ ରାଣୀ ଏକାଟି ବସିଥିବେ ଅନାଇ—
'ଫେରି କେତେ ଦିନେ ଆସିବେ ପ୍ରାଣ ଦୁର୍ଲଭ ସାଇଁ ?'

ପିଲାଏ ବଢାଣୁଥିବେ ତ, ସର୍ବେ ଅଛନ୍ତ ନନା,
'ଜଗା' ଯାଇ ସେଠା ପ୍ରବାସେ ଆଜ ରହୁଛନ୍ତି ମିନା ।
ଆଉ ଯେ ସ୍ମରଣେ କ ଅବା ଲଟେବ ଅଛଇ ମୋର ?
ସେହୁ କଥାମାନ ସ୍ମରଣରେ ଶାନ୍ତି ହୁଏ ଅନ୍ତର ।
କାମ କଲ ବହୁ ଜୀବନେ, ଭେଜ ସୋହାଗ ସୁଖ,
ପର ହିତେ ନଜ କଲ୍ୟାଣେ ହେଲ, ବାଞ୍ଛୁ ବିମୁଖ ।
ଏଭଳ ହିର୍ଦ୍ଧ୍ୟ ଆଉ କେ ଥିବେ ଜଗତେ ମତେ,
ଏତେ ମିଶିଥିବେ ଫତ୍ତୋଶୀ ସେବା ସାଧନା ବ୍ରତେ !
ପୁନଃ ପରବ ଜୀବନେ କଷ୍ଟ ଜାଣିଲା ନାହିଁ,
ପିଠା ଟଗା କଲ ସ୍ୱପନ କର୍ମ ଚର୍ମନ୍ତ ଯେ ଧାଇଁ ।
ନାହିଁ କଉତୁକେ ବଚନେ ତ ନାହିଁ ବଳାଅ ମନ,
ଭବିଷ୍ୟତ ପାଇଁ କଷ୍ଟରେ ବଦନ ନ ସଞ୍ଚ ଧନ ।
ଏଭଳ ପ୍ରଫଳ ଜୀବନ କେତେ ରହିବ ଧର ?
ସୁଖ ଭୋଗ ଲାଗି ମନୁଷ୍ୟ ଫବା ସୁଜନ୍ମ ହରି ।"

ସମାପ୍ତ

———